# ଜୟ ଜଗତ



ନବକୃଷ୍ଣ ଚୌଧୁରୀ

ପ୍ରକାଶ କରିଛନ୍ତି :

ଗ୍ରାମସେବକ ସମବାୟ ପ୍ରକାଶନ ଲି:

କଟକ—୨

ଛାପିଛନ୍ତି

ଗଗନ ବିହାରୀ ଜେନା

ଗ୍ରାମସେବକ ସମବାୟ ପ୍ରେସ,

ବାଖରାବାଦ

କଟକ—୨

୧ମ ସଂସ୍କରଣ—ଜାନୁୟାରୀ, ୧୯୬୦—୨୦୦୦

ମୂଲ୍ୟ—ଏକତିଶ ନୂଆ ପଇସା

# ନିବେଦନ

ଗଣତନ୍ତ୍ର ଓ ଆନ୍ତର୍ରାଷ୍ଟ୍ରୀୟ ପରିସ୍ଥିତି ବିଷୟରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ତିନୋଟି ଭାଷଣ ଏକତ୍ର ସଂଗ୍ରହ କରି ପ୍ରକାଶ କରାଗଲା । ଏଥିରୁ ସର୍ବୋଦୟର ଦୃଷ୍ଟିକୋଣ ହୃଦୟଙ୍ଗମ କରିବାପାଇଁ ଜନସାଧାରଣଙ୍କୁ ସାହାଯ୍ୟ ମିଳିବ ବୋଲି ଆମେ ଆଶାକରୁ ।

—ପ୍ରକାଶକ

# ସୂଚୀପତ୍ର





# ସର୍ବୋଦୟର ସାର ଜୟଜଗତ

[ ଅକ୍ଟୋବର ୨୪ ତାରିଖ ଦିନ ଜଳଙ୍ଗୀରଠାରେ
ଆଚାର୍ଯ୍ୟ ହରିହରଙ୍କ ପ୍ରାର୍ଥନା ସଭାରେ ଭାଷଣ ]

ଆପଣମାନେ ଦେଖିଲେ ଯେ, ଆଜିର ଏ ସଭା ମୌନ ପ୍ରାର୍ଥନାରୁ ଆରମ୍ଭ ହେଲା । ବିନୋବାଜୀ ମଧ୍ୟ ପୁରା ମୌନ ପ୍ରାର୍ଥନାହିଁ ସାଧାରଣ ସଭାରେ କରୁଛନ୍ତି । ଆଜିକାଲି ଦୁନିଆରେ ଏପରି ବହୁଲୋକ ଅଛନ୍ତି ଯେଉଁମାନେ ନିଜକୁ ନାସ୍ତିକ କହନ୍ତି, ଭଗବାନରେ ବିଶ୍ୱାସ କରନ୍ତି ନାହିଁ; କିନ୍ତୁ ସତ୍ୟ, ପ୍ରେମ ଓ କରୁଣାର ଆବଶ୍ୟକତାରେ ବିଶ୍ୱାସ କରନ୍ତି । ମଣିଷ ସମାଜରେ ଏହିସବୁ ଗୁଣର ବିକାଶ ହେବା ଆବଶ୍ୟକ ବୋଲି ମନେ କରନ୍ତି, ସେମାନେ ମଧ୍ୟ ଏଭଳି ମୌନ ପ୍ରାର୍ଥନାରେ ଭାଗନେଇ ପାରିବେ । ଆଜି ଏକ ବିଶେଷ ଜାଗତିକ ପରିସ୍ଥିତି ଭିତରେ ଏ ମୌନ ପ୍ରାର୍ଥନା ଚାଲିଛି । ଆଜି ଯଦି ଆମେ ସାରା ଦୁନିଆକୁ ଚାହିଁବା ତେବେ ଦେଖିବା ଯେ, ସବୁଠି ଆଜି ମଣିଷ ଏକ ପୂର୍ଣ୍ଣ ସର୍ବାଙ୍ଗୀନ ବିପ୍ଳବ ପାଇଁ ବ୍ୟାକୁଳ ହେଉଛି । ଏଥିପୂର୍ବରୁ ଫ୍ରାନ୍ସରେ, ରୁଷରେ, ଚୀନରେ ଓ ଏସବୁ ପୂର୍ବରୁ ଆମେରିକାରେ ବିପ୍ଳବ ହୋଇଛି; କିନ୍ତୁ ସେ ସବୁ ବିପ୍ଳବ ଖଣ୍ଡିଆ ଥିଲା, ସେଥିରେ କିଛି ଅଭାବ ରହି ଯାଇଥିଲା, ସେଥିପାଇଁ ମଣିଷ ଆଜି ଏପରି ଏକ ବିପ୍ଳବ ପାଇଁ ବ୍ୟାକୁଳ ଯାହା ପୂର୍ଣ୍ଣାଙ୍ଗ ହେବ ଓ ତାର ଆତ୍ମାକୁ ଶାନ୍ତି ଦେବ । ଏହା ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ ଆଦି ହିସାବରେ ନୁହେଁ, ଆସ୍ତିକ ବା ନାସ୍ତିକ ଭାବରେ ନୁହେଁ,

ଅମୁକ ଦେଶର ଲୋକ ହିସାବରେ ନୁହେଁ ମାତ୍ର ମଣିଷ ହିସାବରେ ମଣିଷ ଆଜି ଏ ବିପ୍ଳବ ପାଇଁ ବ୍ୟାକୁଳ ହେଉଛି ।

ରୁଷଦେଶର ଜଣେ ବିଶିଷ୍ଟ ସାହିତ୍ୟିକ ପାଷ୍ଟରନାକ୍ ଡକ୍‌ଟର ଜିଭାଗୋ ବୋଲି ଖଣ୍ଡେ ଉପନ୍ୟାସ ଅଳ୍ପଦିନ ତଳେ ଲେଖିଥିଲେ । ସେଥିପାଇଁ ତାଙ୍କୁ ନୋବେଲ ପୁରସ୍କାର ମିଳିଲା । ଏ ବହିରେ ରୁଷ ବିପ୍ଳବର ସମାଲୋଚନା ଥିଲା ବୋଲି ଏହା ରୁଷ ଦେଶରେ ପ୍ରକାଶିତ ହୋଇ ପାରିଲା ନାହିଁ । ଇଟାଲୀ ଦେଶର ଜଣେ ପ୍ରକାଶକ ଏହାର ଅନୁବାଦ ପ୍ରଥମେ ପ୍ରକାଶ କଲେ ଓ ପୁଣି ଏହାର ଇଂରେଜୀ ଅନୁବାଦ ବାହାରିଲା । ଇଟାଲୀୟ ଅନୁବାଦ ପ୍ରକାଶ ପାଇବାରେ ରୁଷ ସରକାର ବାଧାଦେବାକୁ ଚେଷ୍ଟା କରିଥିଲେ; କିନ୍ତୁ ପାରିଲେ ନାହିଁ । ଏ ବହି ପ୍ରକାଶିତ ହେବାରୁ ଦୁନିଆରେ ଖୁବ୍ ଚହଳ ପଡ଼ିଲା । ଇଂଲଣ୍ଡ ଓ ଆମେରିକା ପ୍ରଭୃତି ପାଶ୍ଚାତ୍ୟ ରାଜ୍ୟଗୋଷ୍ଠୀରେ ତାଙ୍କର ଖୁବ୍ ପ୍ରଶଂସା ଓ ରୁଷରେ ଖୁବ୍ ନିନ୍ଦା ହେଲା । ରୁଷର ସରକାର ଓ କମ୍ୟୁନିଷ୍ଟଦଳ ତାଙ୍କ ପ୍ରତି ଅସନ୍ତୁଷ୍ଟ ହେଲେ । ସେ ବିପ୍ଳବ-ବିରୋଧୀ କାର୍ଯ୍ୟ କରିଛନ୍ତି ବୋଲି ତାଙ୍କୁ ରୁଷ ଦେଶର ସାହିତ୍ୟିକ ସଂଘରୁ ବହିଷ୍କୃତ କରାଗଲା ।

ଏ ସବୁ ଭିତରେ ପାଷ୍ଟରନାକଙ୍କ ଆଚରଣ ଉପରେ ଧୀର ଓ ଅବିଚଳିତ ଥିଲା ତାହା ଏକ ଦେଖିବାର ଜିନିଷ ଥିଲା । ସେ ନୋବେଲ ପୁରସ୍କାର ଗ୍ରହଣ କଲେ ନାହିଁ । ସେ କହିଲେ ଯେ, ମୁଁ ରୁଷ ଦେଶକୁ ପ୍ରଗାଢ଼ ଭାବରେ ଭଲପାଏ ଓ ସେଥିପାଇଁ ସେ ଦେଶର ଜନତା ଯାହା ନ ଚାହାନ୍ତି ମୁଁ ତାହା କରିବି ନାହିଁ; ତେଣୁ ଏ ପୁରସ୍କାର ମୁଁ ନେବି ନାହିଁ । ଏଣେ ତାଙ୍କ ଲେଖା ଉପରେ ଦୁନିଆରେ ଗୋଟାଏ ଆଡ଼େ ପ୍ରଶଂସା ଓ ଅନ୍ୟଆଡ଼େ ନିନ୍ଦାର ଯେଉଁ ଝଡ଼ଝଞ୍ଜା ବହିଲା ସେଥିରେ ସେ ବିଚଳିତ ନ ହୋଇ

ଏକାବେଳକେ ନୀରବ ରହିଲେ । କିଛୁଦିନ ପରେ ରୁଷର ଯେଉଁ ନେତାମାନେ ତାଙ୍କୁ ନିନ୍ଦା କରୁଥିଲେ ସେହିମାନେହିଁ ପୁଣି ତାଙ୍କୁ ସାହିତ୍ୟିକ ସଙ୍ଘ ଭିତରକୁ ଫେରାଇ ନେବାକୁ, ତାଙ୍କର ମର୍ଯ୍ୟାଦା ପୁନଃପ୍ରତିଷ୍ଠିତ କରିବାକୁ ବାଧ୍ୟ ହେଲେ । ଏବେ ସେ ଯାହା ଲେଖାଲେଖି କରୁଛନ୍ତି ସେସବୁ ରୁଷିଆରେ ପ୍ରକାଶିତ ହେଉଛି । ସେ ଯେ ନିଜର ଦୋଷ ସ୍ୱୀକାର କରି ଲେଖି ଦେଲେ ବୋଲି ଏହା ହେଲା ତାହା ନୁହେଁ । କୌଣସି ଏକ ଅଜ୍ଞାତଶକ୍ତି, ତାହାକୁ ଆଧ୍ୟାତ୍ମିକ ବା ଆଉ ଯାହା କୁହନ୍ତୁ ନୀରବରେ କାମ କଲା ଓ ତାରି ପ୍ରଭାବରେ ନେତାମାନେ ଏହା କରିବାକୁ ବାଧ୍ୟ ହେଲେ ।

ପାଷ୍ଟରନାକ୍ ତାଙ୍କ ବହିରେ କାହାରି ପ୍ରତି କୌଣସି ଆକ୍ଷେପ କରି ନାହାନ୍ତି, ମାତ୍ର ମଣିଷର ଯାହା ଗଭୀରତମ ଆଶା ଆକାଂକ୍ଷା ତାହାହିଁ ସେ ତାଙ୍କ ବହିରେ ପ୍ରକାଶ କରିଛନ୍ତି । ସେ ଲେଖିଛନ୍ତି ଯେ ଏବେ ସାରା ଦୁନିଆରେ, କୌଣସି ଗୋଟିଏ ଦେଶ ବା ଜାତି ଭିତରେ ନୁହେଁ, ଗୋଟାଏ ବିପ୍ଳବ ଘଟିବାକୁ ଯାଉଛି ଓ ତାହା କୌଣସି ସୋରଗୋଳ ନ କରି, ନୀରବରେ, ମଣିଷର ହୃଦୟ ଭିତରେ ଘଟିଯାଉଛି । ଏ ଧରଣର କଥା ପୂର୍ବରୁ ଭଗବତ୍ ବିଶ୍ୱାସୀମାନେ କହିଛନ୍ତି ଓ କହୁଥାନ୍ତି । ସେମାନେ କହିଛନ୍ତି ଯେ ମଣିଷର ଆତ୍ମା ଜାତି, ଧର୍ମ, ଦେଶ, କାଳର ସବୁ ବନ୍ଧନକୁ ଏଡ଼େଇ ଦେଇ ସେଇ ଗଭୀର ସତ୍ୟକୁ ଉପଲବ୍ଧି କରିବ— ସେମାନେ କହିଛନ୍ତି, "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ ।" ମାତ୍ର ଆଜି ପାଷ୍ଟରନାକ୍ ଯେଉଁ ପରିସ୍ଥିତିରେ ଏକଥା କହିଛନ୍ତି ଓ ସେତେବେଳେ ଯାହାଥିଲା ତାହା କଣ ସମାନ ରହିଛି ? ସେତେ-ବେଳେ ଗୋଟାଏ ଆଡ଼େ ମୁନିଋଷିମାନେ ଏକଥା କହିଲାବେଳେ ଅନ୍ୟଆଡ଼େ ଦେଶର ରାଜା, ମହାଜନ, ଗୃହସ୍ଥ ନିଜର କାରବାରରେ

ଯୁଦ୍ଧ, ହଣାକଟାରେ ଲିପ୍ତ ରହୁଥିଲେ । ସେମାନେ କହୁଥିଲେ— ମୁନିଋଷିଙ୍କ ପାଇଁ ଏସବୁ ତତ୍ତ୍ୱ ଭଲ, ମାତ୍ର ଦୁନିଆର କାରବାର ତାହାଦ୍ୱାରା ଚାଲି ପାରିବ ନାହିଁ । ଏ ଯୁଗରେ ମଧ୍ୟ ରବୀନ୍ଦ୍ରନାଥ, ରୋମ୍ୟାଁ ରୋଲାଁ ପ୍ରଭୃତି ବିଶ୍ୱଶାନ୍ତି କଥା କହୁଥିଲେ; କିନ୍ତୁ ତଥାପି ଦୁନିଆରେ ଦୁଇ ଦୁଇଟା ମହାଯୁଦ୍ଧ ଘଟିଗଲାଣି ଓ ଏବେ ଏକ ତୃତୀୟ ଯୁଦ୍ଧ ପାଇଁ ପରମାଣୁ ବୋମା, ରକେଟ୍ ଇତ୍ୟାଦିର ଆୟୋଜନ ଚାଲିଛି । ରାମାୟଣ ମହାଭାରତରେ ଯେଉଁସବୁ ଅସ୍ତ୍ରର କାଳ୍ପନିକ ବର୍ଣ୍ଣନା ଆମେ ପାଉ ସେସବୁ ବାସ୍ତବରେ ପରିଣତ ହେଉଛି ।

ଏପରି ଅବସ୍ଥାରେ ରୁଷିଆର ଏ ସାହିତ୍ୟିକ ମଣିଷର ଅନ୍ତରରେ ବିପ୍ଳବ କଥା କହିବାଟା ସେଇ ପୁରୁଣା କଥା ପରି ଜଣା ପଡ଼ୁଛି, ମାତ୍ର ପ୍ରକୃତରେ କଣ ସେଇ ପରିସ୍ଥିତି ରହିଛି ? ଆଜି ଦୁନିଆରେ ଯଦି ରାଜନୈତିକ ନେତା ହିସାବରେ ଶକ୍ତିଶାଳୀ କେହି ଥାନ୍ତି, ଯାହାଙ୍କ ହାତରେ ଧ୍ୱଂସର ଶକ୍ତି ଠୁଳ ହେଉଛି, ତେବେ ସେ ହେଉଛନ୍ତି କ୍ରୁଶ୍ଚେଭ ଓ ଆଇଜେନ୍ ହାଓ୍ୱାର । ଏ ଦୁହିଁଙ୍କର ଚିନ୍ତାଧାରାର ଯେଉଁ ପରିଚୟ ଆମେ ଏବେ ପାଇଲେ ତାହା ଛ'ମାସ ତଳେ ପାସ୍ତରନାକ୍ଙ୍କ କଥା ତାଙ୍କ ବହିରେ ପଢ଼ିଲାବେଳେ କେହି କଳ୍ପନା କରି ପାରୁଥିଲେ କି ? ଯେତେବେଳେ ଚାରି ବୃହତ୍ ଶକ୍ତିର ବୈଦେଶିକ ମନ୍ତ୍ରୀମାନେ ନ୍ୟୂନତମ ନିରସ୍ତ୍ରୀକରଣ ପାଇଁ ମାସ ମାସ ଧରି ଆଲୋଚନା ଚଲାଇ ଏକ ଅଚଳ ଅବସ୍ଥାରେ ପହଞ୍ଚିଥିଲେ । ସେତେବେଳେ ରାଷ୍ଟ୍ରନାୟକମାନଙ୍କର ଭେଟ କଥା ଉଠିଲେ ତାକୁ ଏଇକଥା କହି ଉଡ଼େଇ ଦିଆ ଯାଉଥିଲା ଯେ, ଆଗେ ବୈଦେଶିକ ମନ୍ତ୍ରୀ ବୈଠକରେ କିଛି ନିଷ୍ପତ୍ତି ହେଉ, ଯେଉଁ ଶୀତଳଯୁଦ୍ଧ ଚାଲିଛି ତାହା ଟିକିଏ ନରମ ହେଉ, ତା'ପରେ ଯାହା ହେବ । ସେତେବେଳର ଏ ହାଓ୍ୱା ଭିତରେ ପାସ୍ତରନାକ୍ଙ୍କ କଥା ପଢ଼ି ଲୋକଙ୍କୁ ହସ ମାଡ଼ୁଥିବ ଯେ, ଏ କି ପାଗଳ କଥା କହୁଛି ?

ଯାହାଙ୍କ ହାତରେ ସବୁ କ୍ଷମତା ଥିଲା ସେମାନଙ୍କର ମନଗଢ଼ା ବା ଏସ୍ଥା, ଶାସ୍ତ୍ରକାରଙ୍କ ଧାରଣା ଓ ପୃଥିବୀର ବାସ୍ତବିକ ପରିସ୍ଥିତି ଭିତରେ ବା ଆକାଶ ପାତାଳ ପ୍ରଭେଦ, ଏଥିରେ ସ୍ଥାଇ ମୂଲ୍ୟ କଣ ?

ମାତ୍ର ହଠାତ୍ ଦିନେ ପ୍ରକାଶ ପାଇଲା ଯେ ଆଇକଙ୍କ ନିମନ୍ତ୍ରଣରେ କ୍ରୁଶ୍ଚେଭ ଆମେରିକା ଭ୍ରମଣରେ ଯିବେ ଓ ଆଇକ ମଧ୍ୟ ପରେ ରୁଷିଆ ଭ୍ରମଣରେ ଯିବେ । ଏ ସମ୍ବାଦ ଶୁଣି ଏସିଆ ଆଫ୍ରିକାରେ ଥିବା ଭାରତ ଭଳି ଅସ୍ତ୍ରଶସ୍ତ୍ରରେ ଦୁର୍ବଳ ଦେଶମାନଙ୍କ ଭିତରେ ଏକ ଆନନ୍ଦର ଢେଉ ଖେଳିଗଲା ଯେ, ଯାହାହେଉ ଏଥର ବିଶ୍ୱ ପରିସ୍ଥିତିରେ ଯେଉଁ ସଙ୍କଟ ଦେଖା ଦେଇଛି, ଯେଉଁ 'ଘଣ୍ଟାଗ୍ରହ କୁଟ' ଘଟିଛି ତାହା କଟି ଯିବ । ମାତ୍ର ଆମେରିକାରେ ଲୋକେ ବ୍ୟସ୍ତ ହୋଇ ପଡ଼ିଲେ ଯେ ଆଇକ୍ ସବୁ ମାଟି କରୁଛନ୍ତି । ଖବର କାଗଜରେ ଖୋଲଖୋଲା ସମାଲୋଚନା ମଧ୍ୟ ଚାଲିଲା ଯେ, ଏ ଏକ ବୋକାମୀ, ଏହାଦ୍ୱାରା ଆଇକ ନିଜର, ନିଜର ପାର୍ଟିର, ଦେଶର ଓ ଦୁନିଆର ମଧ୍ୟ ଘୋର କ୍ଷତି କରିବେ । ମାତ୍ର ଆଇକ୍ ଏହାର ଜବାବରେ କହିଲେ ଯେ, ମୋ ଆଗରେ ବର୍ତ୍ତମାନ ମୋ ନିଜର, ମୋ ପାର୍ଟିର ଭବିଷ୍ୟତ ନାହିଁ, ମୋ ଆଗରେ ନଗ୍ନ ଭାବରେ କେବଳ ଗୋଟିଏ ପ୍ରଶ୍ନ ଛିଡ଼ା ହୋଇଛି ଯେ ମାନବ ଜାତି ରହିବ ନା ଧ୍ୱଂସ ପାଇବ ? ତେଣୁ ମୋର ନିଜର, ପାର୍ଟିର ବା ଦେଶର କଣ ହେବ ସେଥିପାଇଁ ମୁଁ ବିଚଳିତ ନୁହେଁ ।

ଏହାପରେ ଆସିଲା ରାଷ୍ଟ୍ରସଂଘ ସାମନାରେ କ୍ରୁଶ୍ଚେଭଙ୍କର ଦୁନିଆକୁ ଚମକେଇ ଦେଇଥିବା ସେ ପ୍ରସ୍ତାବ—ଯେ ଚାରିବର୍ଷ ଭିତରେ ସମ୍ପୂର୍ଣ୍ଣ ନିରସ୍ତ୍ରୀକରଣ କରାହେଉ । ଦେଶ ଦେଶ ଭିତରେ ବିବାଦ ହେଲେ ଆଉ ଯୁଦ୍ଧ ନ ଚଳୁ । ଆମ ଭିତରେ କଳହେଲେ ଯେପରି ଠେଙ୍ଗା ବାଡ଼ି ଧରିବା ବେଆଇନ ହୋଇଯାଇଛି ଫେସଲା

ପାଇଁ ଆମକୁ କଚଗାକୁ ବା ଭଦ୍ରଲୋକଙ୍କ ପାଖକୁ ଯିବାକୁ ପଡ଼େ, ସେହିପରି ଯୁଦ୍ଧ ମଧ୍ୟ ବେଆଇନ ହେଉ । ଯୋଉ ଯାଉ ମୂଳକ ତାର ମାତ ବନ୍ଦ ହେଉ । ତାଙ୍କର ଏ ପ୍ରସ୍ତାବ ଶୁଣି ପ୍ରଥମେ ମନେ-ହେଲା ଯେ ସାରା ଦୁନିଆରେ ଏକ ଅବିଶ୍ୱାସର ଅଟ୍ଟହାସ୍ୟ ଉଠିବ, ଏହାକୁ ପ୍ରବଞ୍ଚନାମୂଳକ ବାକ୍ୟଛଟା ବୋଲି କହି ଉଡ଼େଇ ଦିଆଯିବ । ସେପରି ମଧ୍ୟ କେତେକ କହିଲେ । କିନ୍ତୁ ଆମେରିକାର ଜନତା ଓ ନେତାମାନେ ଏହାକୁ ସେପରି ହାଲୁକା ଭାବରେ ନେଇ ନାହାନ୍ତି । ଏଥିରେ ଯେଉଁସବୁ ଅସୁବିଧା ଉପୁଜିବ ଅଥବା କେଉଁ ଲୁଚେଇ ରଖିଛନ୍ତି କି ନାହିଁ ତାହା ଯାଞ୍ଚ କରିବା ପାଇଁ ବ୍ୟବସ୍ଥା ନ ହେଲେ କପଟ ଚାଲିବ, ଆଦି ସନ୍ଦେହ ଆମେରିକା ପକ୍ଷରୁ ଉଠେଇଛନ୍ତି ଓ ରୁଷ ପକ୍ଷରୁ ମଧ୍ୟ ଏସବୁ ଅସୁବିଧା ଓ ସନ୍ଦେହର ଯଥାର୍ଥତା ସ୍ୱୀକାର କରିଯାଇ ତାର ଆଲୋଚନା ହେବା ଉଚିତ ବୋଲି କୁହାଯାଇଛି । ମାତ୍ର ଆମେରିକା ଓ ଅନ୍ୟାନ୍ୟ ରାଷ୍ଟ୍ରମାନଙ୍କ ପକ୍ଷରୁ କ୍ରୁଶ୍ଚେଭଙ୍କ ପ୍ରସ୍ତାବକୁ ଗୁରୁତ୍ୱ ଦିଆଯାଇଛି ।

ଏ କି ପରମାଶ୍ଚର୍ଯ୍ୟ କଥା ? ଯେଉଁ କଥା ପାସ୍ତରନାକ୍ ଓ ବିନୋବା ପ୍ରଭୃତି କହୁଥିଲେ ତାହାକୁହିଁ ଆଜି ଏକ ବ୍ୟବହାରିକ ପ୍ରସ୍ତାବ ରୂପରେ ଆଲୋଚନା କରା ଯାଉଛି । ଅଥଚ ଆଜଯାଏ ଯୀଶୁ, ଚୈତନ୍ୟ ପ୍ରଭୃତିଙ୍କ ମୁଣ୍ଡ ଆକାଶ ଆଡ଼େଇ ରଖି ଦିଆ ଯାଉଥିଲା କାହିଁକି ? ଆଜି ଦୁନିଆର ପରିସ୍ଥିତି ବଦଳିଛି ଓ ସେଥି-ପାଇଁ ଯାହା ଦିନେ ଅସମ୍ଭବ ଥିଲା ତାହାହିଁ ଆଜି ବାସ୍ତବ ସ୍ୱରୂପ ହେବାକୁ ବସିଛି ।

ସମାଜ ବିଜ୍ଞାନ କୁହେ ଯେ ଶ୍ରେଷ୍ଠ ଓ ଶକ୍ତିଶାଳୀ ଲୋକ ଯେପରି ଆଚରଣ କରନ୍ତି ସାଧାରଣ ଲୋକେ ତାର ଅନୁସରଣ କରନ୍ତି । ଗୀତାରେ ମଧ୍ୟ ସେହି କଥା କୁହା ଯାଇଛି—ଯଦ୍ ଯଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ । ତେଣୁ ସମାଜର ଶ୍ରେଷ୍ଠ

ଲୋକେ ହିଂସା ଆଚରଣ କରୁଥିବା ଯାଏ ସାଧାରଣ ଲୋକେ କଦାପି ଅହିଂସାକୁ ଗ୍ରହଣ କରି ପାରିବେ ନାହିଁ । ଏବେ ଦୁନିଆରେ ଧନ ଜନ ଓ ଶକ୍ତିରେ ଶ୍ରେଷ୍ଠ କହିଲେ ଆମେରିକା ଓ ରୁଷିଆହିଁ ବୁଝାଏ । ଏବେ ଆଉ ଏ ବେତାର ଓ ଖବର କାଗଜ ଯୁଗରେ ଶ୍ରେଷ୍ଠ କହିଲେ ଅମୁକ ଗାଁର ଅମୁକ ପଧାନ କି ସାହୁକାର ବୁଝା-ଇବ ନାହିଁ । ଆମେ ଆଜି ସାରା ଦୁନିଆରେ କଏ କଣ କଲା କହିଲା ତାହା ପ୍ରତିଦିନ ଜାଣୁଛୁ ଶୁଣୁଛୁ । ସେଥିପାଇଁ କୌଣସି ବିଷୟ ଏ ଯୁଗରେ ଆମେରିକା ଓ ରୁଷିଆକୁ ପ୍ରଭାବିତ ନ କରିବା ଯାଏ ସେଭଳି ବିଷୟରେ ସବୁ ଭଲ କିନ୍ତୁ ଶେଷକୁ ଗୋଟିଏ 'କିନ୍ତୁ'ରେ ସବୁ ଅଟକି ଯାଉଛି । ଏଇଥି ଯୋଗୁଁହିଁ ଆଜି ଏ ଦୁଇ ଶକ୍ତିଶାଳୀ ଦେଶର ମତିଗତିରେ ଯେଉଁ ପରିବର୍ତ୍ତନ ଘଟିଛି ତାର ବିଶେଷ ତାତ୍ପର୍ଯ୍ୟ ରହିଛି ।

ଆଜି ରାଷ୍ଟ୍ର ସଙ୍ଘ (U.N.O) ଦିବସ । ଯୁଦ୍ଧ ନିବାରଣ ପାଇଁ ଏ ସଂଘ ସ୍ଥାପିତ ହୋଇଛି । ପ୍ରଥମ ମହାଯୁଦ୍ଧରେ ଲିଗ୍ ଅଫ୍ ନେଶନସ୍ ସ୍ଥାପିତ ହୋଇଥିଲା କିନ୍ତୁ ତାହା ଭାଙ୍ଗିଗଲା । ସେଥିରେ ସମସ୍ତେ ନିଜ ମନ ଭିତରେ କଥା ରଖି କାରବାର କଲେ । ଏବେ ରାଷ୍ଟ୍ର ସଂଘରେ ମଧ୍ୟ ଆମ ଲୋକସଭା ବିଧାନସଭା ପରି ଦଳ ସୃଷ୍ଟି ହୋଇଛି । ଭାରତପରି କେତେକ ଦେଶ ସେଥିରେ ନିରପେକ୍ଷ ରହିଛନ୍ତି, କିନ୍ତୁ ସେମାନେ ଆମର ବିଧାନ ସଭାର ସ୍ୱାଧୀନ ସଭ୍ୟଙ୍କ ପରି ଅକ୍ଷମ ହୋଇ ରହୁଛନ୍ତି । ତେଣୁ ରାଷ୍ଟ୍ର ସଙ୍ଘ ପକ୍ଷରୁ କେତେକ ଭଲ କାମ ଏ ଚଉଦ ବର୍ଷ ଭିତରେ ହୋଇଥିଲେ ବି ତାର ପ୍ରଧାନ ଉଦ୍ଦେଶ୍ୟ ଏ ପର୍ଯ୍ୟନ୍ତ ସଫଳ ହୋଇନାହିଁ । ରାଷ୍ଟ୍ରସଂଘ ପକ୍ଷରୁ ମେଲେରିଆ, ଯୁଜ୍, ଯକ୍ଷ୍ମା, ପ୍ରଭୃତି ରୋଗ ନିବାରଣ ପାଇଁ ଆମ ଦେଶରେ ମଧ୍ୟ କାମ ହେଉଛି । ସେ କାମ ଦେଖିଲେ ମନରେ ଆନନ୍ଦ ଓ ଆକାଂକ୍ଷା ହୁଏ ଯେ କେବେ ଏକ ବିଶ୍ୱ ସରକାର ସ୍ଥାପିତ ହେବ ଓ ତାହା ଜରିଆରେ ଜଗତର ଶ୍ରେଷ୍ଠ ଜ୍ଞାନ ସାର

ପୃଥିବୀର ଦୁଃଖୀ ଓ ଦରିଦ୍ରଙ୍କ ସେବାରେ ଲାଗିବ । କେଉଁଦିନ ଏ ରାଷ୍ଟ୍ରୀୟ ସଂକୀର୍ଣ୍ଣତା ଲୋପ ପାଇବ ଯାହା ଯୋଗୁଁ ଆଜି ଦୁନିଆରେ ଅନେକ ସମସ୍ୟାର ସମାଧାନ ଅସମ୍ଭବ ହୋଇ ପଡ଼ୁଛି । ସଂକୀର୍ଣ୍ଣ ଜାତିଆଣ ଭାବପରି ଏ ସଂକୀର୍ଣ୍ଣ ରାଷ୍ଟ୍ରୀୟତା ମଧ୍ୟ ଆଜିର ଜଗତରେ ଏକ ଅତଳ ଜଳଧି ହୋଇ ଗଲାଣି । ଏହାରି ଯୋଗୁଁ ଭାରତ ପାକିସ୍ତାନ ବିବାଦ ମେଣ୍ଟୁ ନାହିଁ ଓ କାଶ୍ମୀର ସୀମାରେ ହଜାର ହଜାର ସୈନ୍ୟ ଛକାଛକି ହୋଇ ଛିଡ଼ା ହୋଇଛନ୍ତି । ଏହିସବୁ କାରଣ ଯୋଗୁଁ ଆଜି ରାଷ୍ଟ୍ର ସଂଘ ତାର ଅସଲ ଉଦ୍ଦେଶ୍ୟ ସାଧନରେ ସଫଲ୍ୟ ଲାଭ କରିପାରୁ ନାହିଁ ।

ସେ ପୁଣି କହିଲେ ଯେ, ଆଜି ଦଳଗତ ଗଣତନ୍ତ୍ର ପଶ୍ଚିମ ଏସିଆର ଅନ୍ୟାନ୍ୟ ଦେଶରୁ ପାଣିଫୋଟକା ପରି ଲୋପ ପାଇଲାଣି, କେବଳ ଭାରତରେ ରହିଛି । ଏଠି ମଧ୍ୟ ପ୍ରକୃତ କ୍ଷମତା ସୈନ୍ୟ ପୁଲିସଙ୍କ ହାତକୁ ଯିବାକୁ ବସିଲାଣି । ଆନ୍ତରାଷ୍ଟ୍ରୀୟ କ୍ଷେତ୍ରରେ ସୈନ୍ୟ ବଳର କୌଣସି ସାର୍ଥକତା ନଥିଲେ ମଧ୍ୟ ଆଭ୍ୟନ୍ତରୀଣ ଶାନ୍ତି ରକ୍ଷାପାଇଁ ତାହା ଆବଶ୍ୟକ ହେଉଛି ଓ ତାହାରି ବଳରେ ଏଠାରେ ଶାସନ ତିଷ୍ଠି ରହିଛି । ଗଣତନ୍ତ୍ରକୁ ବଞ୍ଚାଇବାକୁ ହେଲେ ଲୋକଶକ୍ତି ଜାଗ୍ରତ କରିବାକୁ ହେବ । ଏଥିପାଇଁ ଲୋକଙ୍କୁ ଅନ୍ୟାୟ, ଶୋଷଣ, ଅସାମ୍ୟ, ଅଶାନ୍ତି ଲୋପ କରିବାକୁ, ନୂଆ ଦୁନିଆ ଗଢ଼ିବାକୁ ତଳଆଡ଼ୁ ସଙ୍ଗଠିତ କରିବାକୁ ହେବ । ଗାଁ-ମାନଙ୍କରୁ ମାଲିକ ମୂଲିଆ ଜମିଖିଆ ବକଖିଆ ଭେଦ ଲୋପ କରି ସେଗୁଡ଼ିକୁ ଗ୍ରାମଦାନ ଦୁର୍ଗରୂପେ ସଙ୍ଗଠିତ କରିବାକୁ ହେବ । ଆଜି ଗାଁର ଯେଉଁ ଶୋଷଣ ଚାଲିଛି ସେଥିରେ ଶହେ ଏକର ଥିବା ଚାଷୀ ମଧ୍ୟ ଶୋଷିତ ହେଉଛି ଓ ମୂଲିଆ ସହିତ ନିଜ ସ୍ୱାର୍ଥକୁ ମିଶାଇ ଦେଲେ ଯାଇ ସେ ଶୋଷଣରୁ ରକ୍ଷା ପାଇବ, ଏହା ସେ ବୁଝିବା ଉଚିତ ।

ଭାରତ ଚୀନ ସୀମା ନେଇ ଦୁଇଦେଶ ଭିତରେ ସାମାନ୍ୟ ମତଭେଦ ହୋଇଛି । ଏ ଏକ ସାମାନ୍ୟ ଘଟଣା ଓ ପରସ୍ପର କଥାବାର୍ତ୍ତା ଦ୍ୱାରା ହିଁ ଏହା ତୁଟିଵା କଥା । ଯଦିଓ ଖବର କାଗଜମାନେ ତିଳକୁ ତାଳ କରି ପ୍ରଚାର କରି ଉତ୍ତେଜନା ସୃଷ୍ଟି କରୁଛନ୍ତି ମାତ୍ର ଏ ସମସ୍ୟା ନେଇ ରାଷ୍ଟ୍ରସଙ୍ଘକୁ ଯିବାର ଆମର ଉପାୟ ନାହିଁ । କାରଣ ଚୀନକୁ ତାହାର ସଦସ୍ୟ ହେବାକୁ ଦିଆଯାଉ ନାହିଁ । ଚୀନଭଳି ଏକ ବିରାଟ ଦେଶ, ଯାହା ସହିତ ଭାରତର ବନ୍ଧୁତା ଅଛି ଓ ବିଲାତ ପ୍ରଭୃତି ଦେଶମାନେ ମଧ୍ୟ ଯାହା ସହିତ ସମ୍ପର୍କ ରଖିଛନ୍ତି ତାହାର ସରକାର ରାଷ୍ଟ୍ରସଙ୍ଘର ସଦସ୍ୟ ନହୋଇ ସେଥିରେ ଚ୍ୟାଙ୍ଗକାଇଶେକଙ୍କ 'ଭୁ ହୋଇଲୁ' ସରକାରକୁ ଆସନ ମିଳିଛି । ଏଥିପାଇଁ ଆମର ସୀମା ସମସ୍ୟା ବିଚାର କରିବାର status ରାଷ୍ଟ୍ରସଙ୍ଘର ନାହିଁ । ଏଥିପାଇଁ ଚୀନକୁ ରାଷ୍ଟ୍ରସଙ୍ଘରେ ଆସନ ଦେବାପାଇଁ ଭାରତ ବରାବର ପ୍ରସ୍ତାବ କରି ଆସୁଛି ।

ମୋଟ କଥା, ସର୍ବୋଦୟ ସାରକଥା "ଜୟଜଗତ" ଧ୍ୱନିରେ ଆସି ଯାଉଛି । ଆଜି ଏ ଦୁନିଆରେ ଦେଶ, ଜାତି, ଧର୍ମ ଆଦିର ବାଡ଼ ପକେଇ କୌଣସି ସମସ୍ୟାର ସମାଧାନ କରିହେବ ନାହିଁ । ପୂର୍ବକାଳରେ ଆମ ଦେଶରେ ମଲ୍ଲଯୁଦ୍ଧ ହେଉଥିଲା । କୌଣସି ରାଜକନ୍ୟାକୁ ପାଇବା ପାଇଁ ହେଲେ ପ୍ରାର୍ଥୀମାନେ ମଲ୍ଲଯୁଦ୍ଧ ଦ୍ୱାରା ଶକ୍ତି ପରୀକ୍ଷା କରୁଥିଲେ । ଫ୍ରାନ୍‌ସ, ଜର୍ମାନୀ ପ୍ରଭୃତି ଦେଶରେ କେହି କାହାକୁ ଅପମାନ କଲେ ପରସ୍ପର ଭିତରେ ଡୁଏଲ୍ ଯୁଦ୍ଧ ହେଉଥିଲା । ଏବେ ଏ ସବୁ ଅଚଳ ହୋଇଗଲାଣି, ସେହିପରି ଦେଶ ଦେଶ ମଧ୍ୟରେ ଯୁଦ୍ଧ ବି ଅଚଳ ହେଲାଣି । ଅବଶ୍ୟ ସେ ପ୍ରାଚୀନ ଯୁଗରେ ମଧ୍ୟ ମହାଭାରତକାର ଦେଖେଇଛନ୍ତି ଯେ ଗୋଟାଏ ଆଡ଼େ ସ୍ୱୟଂ ଭଗବାନ ଓ ଅନ୍ୟ ପକ୍ଷରେ ଭଗବାନଙ୍କର

ନାଗସୃଣୀ ସେନା ଥାଇ ଯେଉଁ ଯୁଦ୍ଧ ହେଲା ତାହା ବି ନିଷ୍ଫଳ ହେଲା । ସେଥିରେ ତ ହାରିବା ଜିତିବା ଉଭୟ ପକ୍ଷଙ୍କ ଅବସ୍ଥା ସମାନ ହେଇଗଲା । ଗୁରୁ ବବାଡ଼ର ନିଷ୍ଫଳତାହିଁ ମହାଭାରତର ସବୁଠାରୁ ବଡ଼ ଶିକ୍ଷା । କିନ୍ତୁ ସେକାଳରୁ ଏ ଶିକ୍ଷା ଦିଆ ଯାଇ ଥିଲେ ବି ଲୋକେ ତାହା ଗ୍ରହଣ କରୁନଥିଲେ ଯେପର୍ଯ୍ୟନ୍ତ ପରମାଣୁ ବୋମା ଆମେରିକା ଓ ରୁଷିଆ ଉଭୟ ପକ୍ଷଙ୍କ ହାତରେ ପଡ଼ି ନଥିଲା । ଏହା ପ୍ରଥମେ ଆମେରିକା ହାତରେ ଥିଲା ଓ ନାଗାସାକି ଓ ହିରୋସିମାରେ ଲକ୍ଷ ଲୋକଙ୍କୁ ଧ୍ୱଂସ କରିଦେଇ ସେ ହେଣ୍ଡି ମାରି ବସିଯାଇଥିଲା । ମାତ୍ର ଦିନେ ପରେ ରୁଷ ଗୋଟାଏ ଶବ୍ଦ ଶୁଣାଗଲା ଓ ଲୋକେ ଯେ ବୁଝିଲେ ମଧ୍ୟ ପରମାଣୁ ବୋମା ଅଛି । ଏହା ବଡ଼ ଅନ୍ୟାୟ କଥା ହେଲା ବୋଲି ଆମେରିକାରେ ସେତେବେଳେ ଭାରି ପାଟିତୁଣ୍ଡ ହେଲା । ମାତ୍ର ସେଇଥିଯୋଗୁ ଆଜି ଆମପରି ଦୁର୍ବଳ ଲଫଙ୍ଗା ଲୋକଙ୍କୁ ମଧ୍ୟ ଏହା କହିବାକୁ ବଳ ମିଳି ଯାଇଛି ଯେ, ଆଜି ଯୁଦ୍ଧ ଲଗିପାରିବ ନାହିଁ । ମୁହଁରେ ଯେତେ ଯାହା ଭୟଙ୍କ ଦେଖାଅ ଯୁଦ୍ଧ କରିବାକୁ ଆଉ ତମର ବହପ ନାହିଁ । ଯେଉଁ ଗୁରୁ, ସନ୍ଥ, ମହାତ୍ମାଙ୍କ କଥାକୁ ତେମେ ଅବାସ୍ତବ ବୋଲି ଆଡ଼େଇ ଦେଉଥିଲ ତାଙ୍କରି କଥାକୁ ଏବେ ତମକୁ ଝୁକମାରି ଶୁଣିବାକୁ ହେବ । ଗୋଟାଏ ଆଡ଼େ ସର୍ବୋଦୟ ନ ହେଲେ ସର୍ବନାଶ । ତୃତୀୟ ପନ୍ଥା ନାହିଁ ।

ଆଜି ଯେତେବେଳେ ଦୁନିଆର ଏ ଅବସ୍ଥା ଓ ତାର ପ୍ରତିକାର ପାଇଁ ସର୍ବୋଦୟ ଜୟଜଗତ କଥା କହୁଛୁ ସେତେବେଳେ ଦଳଗତ ରାଜନୀତିର ସମସ୍ୟା ତ ଅତି ସାମାନ୍ୟ କଥା । ଦଳଗତ ରାଜନୀତିକୁ ମୂଳକରି ଯେଉଁ ଗଣତନ୍ତ୍ର ପଦ୍ଧତି ଏସିଆର ଦେଶ-ମାନଙ୍କରେ ଚଳା ହେଇଥିଲା ତାହା ତ ଅନ୍ୟସବୁ ଦେଶରେ

ବୁଦ୍‌ବୁଦ୍ ପରି କୋଟି କୋଟି କଣ ଫାଟି ଚାଲୁଣି । ଏକା ଭିତରେ ତାହା ବଦଳି ଅଛି । ଏଠି ଯେ ତାହା ଅତି ଟଳମଳ ଅବସ୍ଥାରେ ରହିଛି । ମାତ୍ର ମୁଁ ଆଜି ସେ କଥା କହିବାକୁ ଯାଉନାହିଁ । ଆଜି ମୋର କହିବାର କଥା ଯେ ସର୍ବୋଦୟ କେବଳ ବିନୋବା, ଜୟପ୍ରକାଶ ବା ନବକୃଷ୍ଣ ଚୌଧୁରୀର ଏକୁଟିଆ କଥା ନୁହେଁ । ଏହା ବିଶ୍ୱର କଥା, କାଳର, ଯୁଗର କଥା । ଏହା ସାରା ମଣିଷ ଜାତିର ସମସ୍ତଙ୍କର ହୃଦୟ କଥା । ଯେଉଁ କଥାକୁ ତୁଣ୍ଡ ଖୋଲି କହିବାର ସାହସ କାହାର ନଥିଲା ଅଥଚ ଯାହାକୁ ପୋଥିଳୀରେ ବାନ୍ଧି ଠାକୁର ଘରେ ରଖିଥିଲୁ 'ହରିର ନାମ ମହାମନ୍ତ୍ର ଯତଦୂର ଯାଏ' ଅଥଚ ସେ ମହାମନ୍ତ୍ର ସତେ ଜୀବନରେ କାର୍ଯ୍ୟକାରୀ ହୋଇପାରିବ ବୋଲି କାହାର ବିଶ୍ୱାସ ନଥିଲା । ସେହି ମହାମନ୍ତ୍ର ହେଉଛି ସର୍ବୋଦୟ ।

ଆଜିଯାଏ ଆମେ ଧର୍ମ କଥା ସବୁ ଶୁଣିଥିଲୁ କିନ୍ତୁ ବୁଝିଥିଲୁ ଯେ, ଭାଇ ସାଙ୍ଗରେ ସମ୍ପତ୍ତି ପାଇଁ ଅଧିକାର ପାଇଁ କଳି ନକଲାକୁ ତ ଆମର ପିଲାଛୁଆ ବଞ୍ଚିପାରିବେ ନାହିଁ । ଭାଇ ସାଙ୍ଗରେ କଳି ତ ବଞ୍ଚିବା ପାଇଁ । ପେଟ ପାଇଁ ବାଧ୍ୟ ହୋଇ କରୁ । କିନ୍ତୁ ଦେଶ ଦେଶ ଭିତରେ କଳି ତ ଧର୍ମ ଯୁଦ୍ଧ ବୋଲାଏ । ଯୁଦ୍ଧ କରିବାଟା ସ୍ୱଧର୍ମ ବିବେଚିତ ହୁଏ । ମାତ୍ର ଏବେ ସେ ଯୁଗ ବଦଳି ଯାଇଛି । ଏ ପରିବର୍ତ୍ତନ ଯେ ଜଣେ କାହାର ଯୋଗୁ ହୋଇ ଯାଇଛି ତାହା ନୁହେଁ ବା ଅମୁକ ଗୋଟାଏ କୌଣସି ଘଟଣା ଯୋଗୁଁ ଘଟିଛି ତାହା ନୁହେଁ । ଭଗବତ୍ ବିଶ୍ୱାସୀମାନେ କହିବେ ଏହା ଭଗବାନଙ୍କଦ୍ୱାରା ହେଉଛି । ଅନ୍ୟ କେତେକ କହିବେ ଏହା ଇତିହାସର ଗତି ଯୋଗୁ ଘଟିଛି । ମାନବର ଇତିହାସରେ ଏ ବିକାଶ ହୋଇ ଚାଲିଛି । ମଣିଷ କ୍ରମେ କ୍ରମେ ଅଧିକ ସଭ୍ୟ ଓ

ଅନ୍ଧଂସ ହେଉଛି । ଅବଶ୍ୟ କେତେକ ବୈଜ୍ଞାନିକ ଅଛନ୍ତି ଯେଉଁମାନେ ଏହାର ବିରୋଧ କରିବେ । ସେମାନେ କହିବେ— ସୃଷ୍ଟିରେ ବିକାଶ ବରାବର ହେଉଥିବ ବୋଲି କହିବାର କିଛି ମାନେ ନାହିଁ । ଲକ୍ଷ କୋଟି ବର୍ଷପରେ ତ ଏ ସୂର୍ଯ୍ୟ ଏକାବେଳକେ ଅନ୍ଧ ହୋଇ ଲିଭିଯିବ । ସେତେବେଳେ .ସତ୍ୟ, ଅହିଂସା, ବିକାଶ ଏ ସବୁର କି ଅର୍ଥ ବାକି ରହିବ ?

ମାତ୍ର ମଣିଷର ଏଥିରେ କିଛି ଯାଏ ଆସେନାହିଁ । ଯେତେ-ଦିନଯାଏ ଏ ଗ୍ରହରେ ମଣିଷର ଅସ୍ତିତ୍ୱ ରହିଛି ସେତେଦିନଯାଏ ତାର ବିକାଶ ହେଉଥିବ । ପୁଣି ବିଜ୍ଞାନ କେତେ ଲକ୍ଷ କୋଟି ତାରା, ନିହାରିକା ଓ ବିଶ୍ୱଦ୍ୱୀପ ଆବିଷ୍କାର କରିଛି, ସେଠି ମଧ୍ୟ ଜୀବ ସୃଷ୍ଟି ଥିବ ବୋଲି ବିଜ୍ଞାନ ଅନୁମାନ କରୁଛି । ତେଣୁ ଆମର ଏ ପୃଥିବୀରେ ଜୀବସୃଷ୍ଟିର ଦିନେ ଅବସାନ ଘଟିଲେ ମଧ୍ୟ ଏ ବିରାଟ ବିଶ୍ୱବ୍ରହ୍ମାଣ୍ଡ ଭିତରେ କେଉଁଠି ହେଲେ ଜୀବନର ବିକାଶ ଆଗେଇ ଚାଲିବ । ସେଥିପାଇଁ ବିଚାରିବାର କଥା ଯେ ମଣିଷକୁ ଏ ଯେଉଁ ଜୀବନ ମିଳିଛି, ଏ ପ୍ରାଣ, ମନ, ଆତ୍ମା ମିଳିଛି, ଯେଉଁ ଚିନ୍ତା, ଭାବନା ଓ ଉଦ୍ଭାବନୀ ଶକ୍ତି ମିଳିଛି ଏସବୁ ବିକାଶ ପାଇଁ ନା ସର୍ବନାଶ ପାଇଁ ? କଣ ମାନବଜାତି ତାର ଏସବୁ ଶକ୍ତିକୁ ଧ୍ୱଂସପାଇଁ ଲଗାଇବାରେହିଁ ତାର ସାର୍ଥକତା ? ପ୍ରଶ୍ନର ଜବାବ ବିଜ୍ଞାନ ଦେଇ ପାରିବ ନାହିଁ । ଏହାର ବୈଜ୍ଞାନିକ ପ୍ରମାଣ ନାହିଁ । ମଣିଷର ଅନ୍ତରର ବିଶ୍ୱାସ, ମଣିଷର ବିବେକହିଁ ଏହାର ଜବାବ ଦେଇ ପାରିବ । ଉପନିଷଦରେ ଯେଉଁ 'ଅଙ୍ଗୁଷ୍ଠ ପ୍ରମାଣ' ଆତ୍ମା ମଣିଷ ଭିତରେ ଅଛି ବୋଲି ବର୍ଣ୍ଣନା କରା ହେଉଛି ସେଇ ଏହାର ଜବାବ ଦେବ ଯେ ନା ସର୍ବନାଶ ମାନବଜାତିର ଚରମ ପରିଣତି ନୁହେଁ ।

ମାତ୍ର ତେଣେ ରୁଷିଆ ଓ ଆମେରିକା ଯେଉଁ ଧ୍ୱଂସର ଆୟୋଜନ ଆଜିଯାଏ ଚଳାଇଛନ୍ତି ଆମେ ମଧ୍ୟ ତାହାର ଦ୍ୱାରା ପ୍ରଭାବିତ ହୋଇଛୁ । ଗାନ୍ଧୀଜୀଙ୍କର ଯେଉଁ ଚେଲାମାନେ ଆମ ଦେଶର ଶାସନ ଦାୟିତ୍ୱ ମୁଣ୍ଡାଇଲେ ସେମାନେ ସୁଦ୍ଧା ସୈନ୍ୟବାହିନୀ ଗଢିବା ଫେରରେ ପଡ଼ିଗଲେ । ଯଦିଓ ଅନ୍ୟ କେତେକ ବିଜ୍ଞବର କହି ଆସିଛନ୍ତି ଯେ ଧ୍ୱଂସାଶକ୍ତିରେ ଆମେରିକା ଓ ରୁଷିଆ ସହିତ ପ୍ରତିଯୋଗିତା କରି ଆମେ କେବେହେଲେ ପାରିବା ନାହିଁ । ବରଂ ଆମେ ପ୍ରେମ, ବିବେକ, କରୁଣା ଆଦିରେ ପ୍ରତିଯୋଗିତା କରିବା ତ କିଛି ଦେଖେଇ ପାରିବା । ଗୋଟାଏ ବାଜେ ସୈନ୍ୟଦଳ, ବାଜେ ନୌବାହିନୀ, କେତେଟଣ୍ଡ ଉଡ଼ାଜାହାଜ ନେଇ ଆମେ କାହିଁକି ସେମାନଙ୍କ ସାଙ୍ଗରେ ଟକ୍କର ଦେବାକୁ ଚେଷ୍ଟା କରିବା ? ମୁଁ ଆମ ସୈନ୍ୟଦଳକୁ ବାଜେ କହୁଛି ବୋଲି ଆପଣମାନଙ୍କ ରାଷ୍ଟ୍ରୀୟତାରେ ଆଞ୍ଚ ଆସୁଥିବ, ସେଥିପାଇଁ ମତେ କ୍ଷମା କରିବେ । କିନ୍ତୁ ଗରିବର ପଇସା, ବର୍ଷକୁ ତିନିଶହ କୋଟି ଟଙ୍କା ଶ୍ରାଦ୍ଧ କରି ଏ ଯେଉଁ ସେନ୍ୟଦଳ ରଖିଛୁ ତାହା ଦ୍ୱାରା କେଉଁ ସମସ୍ୟାର ସମାଧାନ ହେଉଛି । ଏ ସାମାନ୍ୟ ଗୋଆକୁ ସୁଦ୍ଧା ଆମେ ଅସ୍ତ୍ରବଳରେ ସାଧି କରି ପାରୁନାହୁଁ କାହିଁକି ? କଣ ପର୍ତ୍ତୁଗାଲର ବଳ ବେଶୀ ? ଆପଣ ହୁଏତ କହିବେ ଭାରତରେ ଏମାନେ ଗାନ୍ଧୀଚେଲା ହୋଇ କାପୁରୁଷ ହୋଇଗଲେଣି । ଗାନ୍ଧୀ ତ ଗୁଜରାଟି ବଣିଆ, ସେଠି ତ ସେମାନେ ପୁଣି ଶ୍ରୀକୃଷ୍ଣଙ୍କୁ କହନ୍ତି 'ରଣଛୋଡ଼' ଅର୍ଥାତ୍ ଯେ ଯୁଦ୍ଧ ଛାଡ଼ି ଦେଇଥିଲେ, ତେଣୁ ଏମାନେ ପାରୁନାହାନ୍ତି । ମାତ୍ର ଚୀନରେ କଣ ହେଉଛି ? ସେଠି ମଧ୍ୟ ମାକାଓ ପ୍ରଭୃତି ପର୍ତ୍ତୁଗୀଜ୍ ଅଧିକୃତ ଅଞ୍ଚଳକୁ ସେମାନେ ସାଧି କରି ପାରୁନାହାନ୍ତି କାହିଁକି ? କୋରିଆ, ଇଣ୍ଡୋଚାଇନା, କାଶ୍ମୀର

କେଉଁଠି ହେଲେ ଆଜ ଅସ୍ତ୍ରବଳରେ କୌଣସି ସମାଧାନ ହୋଇ ପାରିବ ? ଆଜ ଏହା ଅସମ୍ଭବ । ଆଜ ଯେ ଯୁଦ୍ଧ କରିବାକୁ ଯିବ ସେ ବି ମରିବ, ଏ କଥା ସାବ୍ୟସ୍ତ ହୋଇଗଲାଣି, ଯୁଦ୍ଧ କାଳର କଳମରେ ନହେଲେ ସୁଦ୍ଧା କାର୍ଯ୍ୟରେ ବେଆଇନ ହୋଇଗଲାଣି । ସେଥିପାଇଁ ଆନ୍ତର୍ଜାତିକ କ୍ଷେତ୍ରରେ ସୈନ୍ୟବଳର ଆଉ କୌଣସି ମୂଲ୍ୟ ନାହିଁ ।

ସର୍ବୋଦୟର ଏ ଜାଗତିକ ଦିଗ ମୁଁ ଆପଣମାନଙ୍କ ଆଗରେ ରଖିଲି । ଏହାର ରାଜନୈତିକ, ସାମାଜିକ, ଅର୍ଥନୈତିକ ଆଦି ଆଉ ଅନେକ ଦିଗ ମଧ୍ୟ ରହିଛି । ଖାସ କରି ରାଜନୈତିକ ବିଷୟରେ ଆଜକାଲି ଲୋକେ ବେଶୀ ଆଗ୍ରହୀ । ଅନେକେ ମନେ କରନ୍ତି ଯେ ଆମଙ୍କପରି ଲୋକ ଦେଶର ଶାସନ ଦାୟିତ୍ୱ ଛାଡ଼ି ଏଣେ ଆସିବାଟା କଣ ଠିକ ? ମାତ୍ର ସେଠି ଯଦି କିଛି କ୍ଷମତା ପ୍ରକୃତରେ ଥାନ୍ତା ତା'ହେଲେ ମୁଁ ଏଣେ ଆସିଥାନ୍ତି ? ସେଠି ସବୁ କ୍ଷମତା ତ ପୁଲିସ ଓ ସୈନ୍ୟଙ୍କ ହାତରେ ଯାଇ ରହିଲାଣି । କେରଳ ଓ କଲିକତାରେ ଆମେ କଣ ଦେଖିଲୁ ? ଅବଶ୍ୟ ମନ୍ତ୍ରୀମାନେ କହିବେ ଯେ ଆମ କ୍ଷମତା ବଡ଼, ସମ୍ବିଧାନରେ ସେ କଥା ଲେଖା ହୋଇଛି ଦେଖ; କିନ୍ତୁ ପ୍ରକୃତରେ ଏମାନେ ସାମରିକ ଶକ୍ତିର Sufferanceରେ ହିଁ ରହିଛନ୍ତି । ପାକିସ୍ତାନରେ ଆମେ କଣ ଦେଖିଲେ ? ସେଠି ସାମରିକ ଶାସନ ବିରୁଦ୍ଧରେ କେହି ହେଲେ ହୁଁ ଚୁଁ କଲେ ? ଏଇଥିପାଇଁ ଜିନ୍ନା ସେ ଦେଶକୁ ସ୍ୱାଧୀନ କରିଥିଲେ ? ବରଂ ରୁଷ ଦେଶରେ ଜନମତର ଅଧିକ ପ୍ରଭାବ ଅଛି ବୋଲି ସ୍ୱୀକାର କରିବାକୁ ହେବ । ସେଠି ପାସ୍ତରନାକଙ୍କ ପୁନର୍ପ୍ରତିଷ୍ଠା ହେଲା କାହିଁକି ? ଷ୍ଟାଲିନଙ୍କୁ ତଡ଼ାଇଲା ପରେ କ୍ରୁଶ୍ଚେଭ ଯେ ପୁଣି ସେହିପରି ଡିକ୍ଟେଟର୍ ନହୋଇ ସେ ଦେଶର

କଟକଣା ଅନେକ କୋହଳ କରି ଦେଉଛନ୍ତି ଏହାର କାରଣ ସେଠାର ଯୁବକ, ସେଠାର ଜନତା ଆଜି ସେପରି ଉତ୍‌କଟେଠଣ ସହ୍ୟ କରିବାକୁ ପ୍ରସ୍ତୁତ ନୁହନ୍ତି ଏହା ସେ ବୁଝୁଛନ୍ତି ।

ଭାରତରେ ଗାନ୍ଧୀଜୀଙ୍କ ପ୍ରେରଣାରେ ଲୋକଶକ୍ତି ଜାଗ୍ରତ ହୋଇଥିଲା ଓ ସେହି ନୂଆଶକ୍ତି ବଳରେ ସ୍ୱରାଜ ଆସିଲା । କିନ୍ତୁ ସ୍ୱରାଜ ପରେ ସେ ଶକ୍ତି ପୁଣି ଶୋଇ ଯାଉଛି । ନେତାମାନଙ୍କ କଥାରୁ ଲୋକଙ୍କ ବିଶ୍ୱାସ ତୁଟି ଯାଉଛି । ଏପରି କି ସର୍ବଜନପ୍ରିୟ ନେତା ଜବାହରଲାଲ, ଯାହାଙ୍କୁ ଦେଖିବାକୁ ଲକ୍ଷ ଲକ୍ଷ ଲୋକ ରୁଣ୍ଡ ହୁଅନ୍ତି ତାଙ୍କ କଥାରେ ମଧ୍ୟ ଲୋକଙ୍କର ଆସ୍ଥା ନାହିଁ । କେରଳ ଘଟଣାରେ, ଇନ୍ଦିରା ଗାନ୍ଧୀ କଂଗ୍ରେସ ଅଧ୍ୟକ୍ଷ ହେବା ଘଟଣାରେ, ଆମେ ଦେଖିଲେ ଯେ ତାଙ୍କ କଥାରେ ସୁଦ୍ଧା ଅନ୍ୟ ଭିତର ଉଦ୍ଦେଶ୍ୟ ଆରୋପ କରା ହେଉଛି । ଏ ଅବସ୍ଥାରେ କି ଲୋକଶକ୍ତି ଗଢ଼ି ଉଠିବ ? ରାଜନୀତି ଭିତରେ ରହି ଆଜି ଏ ଲୋକଶକ୍ତି ଗଢ଼ି ହେବ ନାହିଁ ।

ଅବଶ୍ୟ ଲୋକଶକ୍ତି ମୋଟେ ନାହିଁ ବୋଲି କହିବା ଅବିଶ୍ୱାସୀ କଥା ହେବ । କେଉଁଠି କେଉଁଠି ତାର ନମୁନା ଦେଖିବାକୁ ମିଳୁଛି । କଳାହାଣ୍ଡିରେ ଜଣେ ଉଚ୍ଚପଦସ୍ଥ ହାକିମଙ୍କ ଘୁଷ କାରବାର ଧରିବା ପାଇଁ ଲୋକେ ଯେପରି ଲାଗିପଡ଼ିଲେ ଓ ତାଙ୍କୁ ଧରାପକେଇ ଛାଡ଼ିଲେ ତାହା ଦେଖି ମୋର ଛାତି କୁଣ୍ଢେମୋଟ ହୋଇ ଯାଉଛି । ରାଜନୀତିକ କର୍ମୀ ବିଶେଷତଃ ଗଣତନ୍ତ୍ର ପରିଷଦର କର୍ମୀଙ୍କର ବାହାଦୁରୀ ଏଥିରେ କମ୍ ନାହିଁ । ଜନତାର ଏହି ଶକ୍ତିକୁ ଜାଗ୍ରତ କରିବାହିଁ ପ୍ରକୃତ ରାଜନୀତି । ଯେ ଜନତାର ଏ ସୁପ୍ତଶକ୍ତିକୁ ଜାଗ୍ରତ କରାଇପାରିବ ତାକୁହିଁ କ୍ଷମତାରେ ଥିବା ଲୋକେ ଡରିବେ । ଚୁକିଆରେ ଏହି ଶକ୍ତିକୁ ଡରି ପାଦ୍ରୀମାନଙ୍କୁ

ଫେରେଇ ନଥାନ୍ତେଲ୍ । ଜାପାନ ବିରୁଦ୍ଧରେ ଚୀନ ଲଢ଼ିଲାବେଳେ, ଷ୍ଟାଲିନଗ୍ରାଡ଼୍ ରକ୍ଷା ପାଇଁ ରୁଷ୍‌ର ଜନସାଧାରଣ ଲଢ଼ିଲାବେଳେ ତାଙ୍କ ହାତରେ ଅସ୍ତ୍ରବଳ ନଥିଲା, ମାତ୍ର ସେମାନେ ଯେଉଁ ଗୌରବୋଜ୍ଜ୍ୱଳ ପ୍ରତିରୋଧ କଲେ ତାହା ଆଧ୍ୟାତ୍ମିକ ଶକ୍ତି ବଳରେ ହିଁ କରି ପାରିଲେ । ଜନତାଠାରେ ଏହି ଶକ୍ତି ଥିଲେ ଯାଇଁ ପ୍ରଜାତନ୍ତ୍ର ରହିବ, ଶାନ୍ତି ରହିବ । ମାତ୍ର ଆଜି ସବୁଠାରୁ ବିପଦର କଥା ଯେ ଗଣତନ୍ତ୍ରର ଆଦର୍ଶ ଜନତାକୁ ଆକୃଷ୍ଟ କରୁନାହିଁ । କେବଳ ଉପରର କଥା ଦେଖି, ଆମେରିକା ବା ରୁଷରେ କଣ ହେଉଛି ତାହା ଶୁଣି ଜନତା ଉଦ୍‌ବୁଦ୍ଧ ହୋଇ ପାରିବ ନାହିଁ । ତାକୁ ତଳଆଡ଼ୁ ଛୁଆଁ କରିବାକୁ ହେବ । ଆମେ ନୂଆ ଦୁନିଆ ଗଢ଼ିବୁ, ଶୋଷଣ, ଅନ୍ୟାୟ, ଅଶାନ୍ତି ଲୋପ କରିବୁ, ଅସାମ୍ୟ ଭାଙ୍ଗିବୁ, ଏ ଚେତନା ସେମାନଙ୍କ ଭିତରେ ଆଣିବାକୁ ହେବ । ନେତାମାନେ ଏହା କରିବାକୁ ଅକ୍ଷମ, ଦୁର୍ବଳ ତ ତାଙ୍କୁ ଆଡ଼େଇ ଦେଇ ଆମେ ଆଗେଇ ଯିବୁଁ ଏଭଳି ପଣ କରିବାକୁ ହେବ । ଆମର ଗାଁମାନଙ୍କୁ ଏପରି ସ୍ୱାଧୀନତା, ସାମ୍ୟ, ଶାନ୍ତିର ଗୋଟିଏ ଗୋଟିଏ ଦୁର୍ଗ କରି ଗଢ଼ିବାକୁ ହେବ । ଇଂରେଜୀ ସାମ୍ରାଜ୍ୟବାଦ ଦ୍ୱାରା ଯେପରି ଏ ଦେଶର ଶୋଷଣ ଚାଲିଥିଲା ଆଜି ସହରମାନଙ୍କ ଦ୍ୱାରା ଗାଁର ସେହିପରି ଶୋଷଣ ଚାଲିଛି । ଏହା ଏବେ ଅର୍ଥନୀତି ବିଶାରଦମାନେ ବି ସ୍ୱୀକାର କଲେଣି । ଏ ଶୋଷଣକୁ ସରକାର ବା ଯୋଜନା କମିଶନ୍ ବନ୍ଦ କରି ପାରିବ ନାହିଁ । କାରଣ ଏ ସରକାରତ ଗୋଡ଼ାଣିଆ ହୋଇଗଲାଣି । ଲୋକେ ଯେଉଁଠି ଠାକୁରଘର ପାଇଁ ପଚାଶ ପଚିଶ ଟଙ୍କା ବା ମଦବୋତଲ ପାଇଁ ଭୋଟ ବିକି ଦେଉଛନ୍ତି ସେଠି ତାଙ୍କର ପ୍ରତିନିଧି ସରକାର ମଧ୍ୟ ତାହାଠାରୁ ଆଉ କେତେ ଭଲ ହେବ ? ତେଣୁ

ଲୋକଙ୍କୁ ମଜବୁତ କଲେ ଯାଇ ଏହାର ପ୍ରତିକାର ହେବ । ଏଥିପାଇଁ ଗାଁକୁ ଗ୍ରାମଦାନ ଦ୍ୱାରା ଏକ କରିବାକୁ ହେବ । କଣିଖିଆ ବିକଖିଆ ଭେଦ ଗାଁରୁ ଲୋପ କରିବାକୁ ହେବ । ଏହି ଭେଦ-ଯୋଗୁଁ ଗାଁର କୃଷୀ ତାର ଫସଲର ଉଚିତ ଦାମ ପାଉ ନାହିଁ । ସହରର ଲୋକେହିଁ, ବିଶେଷ କରି କଳକାରଖାନାର ମାଲିକ ତାହା ଦ୍ୱାରା ଲାଭବାନ ହେଉଛନ୍ତି । କଲିକତା ସହର ପାଇଁ ହିଁ ଆଜି ବଙ୍ଗଳା ଓଡ଼ିଶାର ଏକ ଖାଦ୍ୟାଞ୍ଚଳ ଗଠନ ପ୍ରସ୍ତାବ ଉଠିଛି । କଳକାରଖାନାର ଶ୍ରମିକ ସଙ୍ଗଠିତ ବୋଲି ଆଜି ତାର ଦାବୀ ହାସଲ କରି ପାରୁଛି । ତାକୁ କେହି କହି ଦେଇ ପାରୁନାହିଁ ଯେ, ତୁ ତ ଗାଁରେ ବାରଅଣା ମୂଲ ପାଉଥିଲୁ । ଚୌଦ୍ୱାର ଲୁଗାକଳକୁ ଆସିଲୁ ବୋଲି ଚାରି ଟଙ୍କା କାହିଁକି ପାଇବୁ ? ମାତ୍ର କୃଷୀ ତ ମୋଟେ ସଙ୍ଗଠିତ ନୁହେଁ । ତାହା ଭିତରେ ଜାତିଭେଦ, ଧର୍ମଭେଦ, ଭାଷାଭେଦ ଆଦି ପୁରି ରହିଛି । ସ୍ୱରାଜ ବାରବର୍ଷ ହେଲା ହେଲାଣି, ଗାଁର ଉନ୍ନତି ପାଇଁ କହିତ ଟଙ୍କା ଖର୍ଚ୍ଚ ହେଲାଣି, ମାତ୍ର ଗାଁର ଅବସ୍ଥାରେ କୌଣସି ମୌଳିକ ପରିବର୍ତ୍ତନ ହେଉନାହିଁ । ଇଂରେଜ ଅମଳରେ ମଧ୍ୟ ଯେପରି ହେଉଥିଲା, ପଦାକୁ ଦିଶିବା ପାଇଁ କେତେକ ଦେଖାଣିଆ ପୂର୍ତ୍ତକାର୍ଯ୍ୟ—Window dressing ଗାଁରେ କରା ହେଉଛି, ମାତ୍ର ସରକାରଙ୍କର ନିଜର ମୂଲ୍ୟାଙ୍କନ ବିବରଣୀରୁ (evaluation report) ଜଣା ଯାଉଛି ଯେ ସବୁଆଡ଼େ ମୁଗୁସମୁହଁ ମେଳ । କେଲିଆମୂଣ୍ଡରେ ହିଁ ପ୍ରାୟ ତେଲ ଢଳା ଯାଉଛି । ଦେଶର ଯେଉଁ ଶତକଡ଼ା ୭୦ ଲୋକ ଗରିବ କୃଷୀ ଦୁଇଚାରି ଏକରବାଲା ଓ ଭୂମିହୀନ, ସେମାନଙ୍କ ଯାଏ ସାହାଯ୍ୟ ପହଞ୍ଚୁ ନାହିଁ । ପଚାଶ କୋଡ଼ିଏ ଏକରବାଲାଙ୍କ ପାଖରେ ହିଁ ସବୁ ଋଣ, ସାହାଯ୍ୟ ଆଦି ପହଞ୍ଚୁଛି । କଂଗ୍ରେସର ନାଗପୁର ପ୍ରସ୍ତାବ

ଉପରେ ସମବାୟ ଚାଷ ଦେଶରେ ଚଳାଯିବ ବୋଲି ଖୁବ ଚଳାଚଳ ଚାଲିଛି, ମାତ୍ର କିଏ କରିବ ? ଯେଉଁମାନେ ବଡ଼ ବଡ଼ ଜମିମାଲିକ, ଉତ୍ପାଦନ ବଢ଼େଇବାରେ ସେମାନଙ୍କର କ ଗରଜ ଅଛି ? ହୀରାକୁଦ ହେଲା, ଏଣିକି କେନାଲ ପାଣି ମଡ଼େଇ ଦୁଇ ତିନଟା ଫସଲ କରାଯିବା ଆବଶ୍ୟକ ବୋଲି କହିଲେ ସେମାନେ କାହିଁକି ଶୁଣିବେ ? ଶହେ ଏକରରୁ ଗୋଟାଏ ଫସଲରେ ଯାହା ମିଳୁଛି ସେଥିରେ ଭଲରେ ଚଳି ଯାଉଛନ୍ତି, ଗହଣା ଗଢ଼ା ହେଉଛି, ପୁଅ କଲେଜରେ ପଢ଼ୁଛି । ପୁଣି ଦୁଇଟା ଫସଲ ପାଇଁ ଜଳକର ଦିଅ, ବାଡ଼ବୁଜ, ଟଙ୍କା ଲଗୁଡି କର, ଏସବୁ ନୂଆ ହେଙ୍ଗମା କାହିଁକି କରିବାକୁ ଯିବେ ? ଏ ଅବସ୍ଥାରେ ନାଗପୁର ପ୍ରସ୍ତାବର ଅବସ୍ଥା କଣ ହେବ ?

ଏଣେ ଯଦି ଦେଶରେ ଖାଦ୍ୟ ଉତ୍ପାଦନ ଓ ଛୋଟ ଛୋଟ ଶିଳ୍ପ ଜରିଆରେ ଖାଉଟି ଜିନିଷର ଉତ୍ପାଦନ ନ ବଢ଼େ ତାହା ହେଲେ ଏ ଯେଉଁ ବିରାଟ ପାଞ୍ଚବର୍ଷୀୟ ଯୋଜନା ତାହା ତାସ୍‌ର ଘରପରି ଭାଙ୍ଗିପଡ଼ିବ । ବଡ଼ ବଡ଼ କାରଖାନା ଖୋଲିବାରେ ଯେଉଁ ଟଙ୍କା ଲଗୁଡି ହେଉଛି ତାହା ମୁଦ୍ରାସ୍ଫୀତି ସୃଷ୍ଟି କରିବ । ଚୀନ ଓ ଜର୍ମାନୀରେ ମୁଦ୍ରାସ୍ଫୀତି ଯୋଗୁଁ କପଡ଼ ସାମାନ୍ୟ ଜୁଟି ବା ଜୋତା ପାଇଁ ଟୋକେଇ ଟୋକେଇ ନୋଟ ଦେବାକୁ ପଡ଼ୁଥିଲା ତାହା ଆମେ ଜାଣୁ । ଏ ମାରାତ୍ମକ ଅବସ୍ଥାରୁ ରକ୍ଷା ପାଇବାକୁ ହେଲେ ଖାଦ୍ୟ ଉତ୍ପାଦନ ବଢ଼ିବା ଦରକାର, ସେଥିପାଇଁ ଚାଷୀ ହାତକୁ ଜମି ଆସିବା ଦରକାର । ଏ ସାମ୍ୟବାଦ ଯୁଗରେ ଯେତେବେଳେ ଚାରିଆଡ଼େ ସାମ୍ୟର ଡଙ୍କା ବାଜୁଛି ସେତେବେଳେ ନଡ଼ିଆବାଗରେ ବାଉଗ ଦରପେଟା ଖାଇ ଗଛ ଜଗି ରହିବେ, ଏହା ଆଉ ଚଳିବ ନାହିଁ । ସାମ୍ୟ ସ୍ଥାପନ କରିବାକୁ ହେବ,

ତେବେ ଯାଇ ମୂଲିଆ କାମ କରିବେ । ତାହା ନହେଲେ ତ ଏବେ ସମସ୍ତେ କୋଟପେଣ୍ଟ୍ ଓ ଜୋତା ପିନ୍ଧିଦେଇ ଦେହ ମିହନତରୁ ଖଲାସ ହେବାର ସହଜବାଟ ପାଇଗଲେଣି । ଅସଲ କରିବା କଥା ନକରି କେବଳ ବକ୍ତୃତା ଦେଲେ ହେବ ନାହିଁ । ଆଜି ଆଉ ନେତାମାନଙ୍କ ଶବ୍ଦରେ ଶକ୍ତି ନାହିଁ । ସେ ଶକ୍ତି କପରି ଆସିବ ? ଲୋକେ ଯେବେ କଥାଟାକୁ ବୁଝିବେ, ଯେବେ ଏକଜୁଟ ହୋଇ ଲଢ଼ିବାକୁ ଅଣ୍ଟା ଭିଡ଼ିବେ ତେବେ ଯାଇ ସେ ଶକ୍ତି ଆସିବ । ଯେବେ ଶାସନ-ଗାଦୀରେ ଶକ୍ତି ଥାନ୍ତା ତାହାହେଲେ ନବଚୌଧୁରୀ ତାକୁ ଛାଡ଼ି ଏଠିକି ଆସିଥାନ୍ତା ? ଶକ୍ତିର ସ୍ରୋତ ଏଇ ଜନତା ଭିତରେ ରହିଛି ବୋଲି ତାଙ୍କଠାକୁ ସେ ଆସିଛି ।

ଭୂସଂସ୍କାର ବିଷୟରେ ବହୁତ କଥା ଅନେକଙ୍କଠୁଁ ଶୁଣୁଛୁ; କିନ୍ତୁ ହେଉଛି କାହିଁ ? କେରଳରେ କମ୍ୟୁନିଷ୍ଟମାନେ ସୁଦ୍ଧା କଠି କରି ସେଇ ସିଲିଂ ଧାର୍ଯ୍ୟ କଲେ । କାଶ୍ମୀରରେ ସିଲିଂ ହେଲା ମାତ୍ର ମାଲିକମାନେ ନିଜ ପରିବାର ଭିତରେ ସବୁ ଭାଗବଣ୍ଟା କରି ନେଲେ, ସରକାର ହାତକୁ କିଛି ଆସିଲା ନାହିଁ । ଉପରୁ ଏହା ହୋଇ ପାରିବ ନାହିଁ । ଏହାର ଏକମାତ୍ର ପନ୍ଥା ଗାଁର ଜମି ଗାଁର କରିଦେବା । ତାହାହେଲେ ଗାଁରେ ଗ୍ରାମୋଦ୍ୟୋଗ ଚାଲିବ, ବିଜୁଳୀ ଆଦିର ଉପଯୋଗ ସେଥିପାଇଁ ହେବ ଓ ଉତ୍ପାଦନ ବଢ଼ିବ । ଗାଁର ଜମି ହେଲେ ଫସଲ ପାଇଁ ଉଚିତ ମୂଲ୍ୟ ମିଳିବ । ଏକଥା ଶୋଷିତମାନେ ବୁଝିଲେ ଯାଇ ଏହା ହେବ ଓ ଆଜି ଗାଁର ଶହେ ଏକରବାଲା ମଧ୍ୟ ଶୋଷିତ । ଏହି କଥାଟା ସେମାନେ ଉପଲବ୍ଧି କରିବାରେ ହିଁ ପ୍ରକୃତ ଶକ୍ତି ରହିଛି ।

—*—

# ଏସିଆରେ ଗଣତନ୍ତ୍ରର ସଙ୍କଟ

[ଭୂମିଜୟନ୍ତୀ ସପ୍ତାହରେ କଟକରେ ପ୍ରଦତ୍ତ ଭାଷଣର ସାରାଂଶ ]

ଗତ ବାରବର୍ଷ ଭିତରେ ଏସିଆର ଯେତେଗୁଡ଼ିଏ ଦେଶ ସ୍ୱାଧୀନ ହୋଇଥିଲେ ସେଥିଭିତରୁ କେବଳ ଭାରତ ଓ ଲଙ୍କା ଛଡ଼ା ଆଜି ସବୁ ଦେଶରୁ ଗଣତନ୍ତ୍ର ଲୋପ ପାଇଲାଣି । ଅନେକେ କହନ୍ତି ଯେ, ଭାରତର ସ୍ଥିତି ପାକିସ୍ତାନ ଠାରୁ ଭିନ୍ନ । ମାତ୍ର ମୁଁ ନମ୍ରଭାବରେ କହିବି ଯେ, ଆମେ ଦୁଇରାଷ୍ଟ୍ର ସିଦ୍ଧାନ୍ତରେ ବିଶ୍ୱାସ କରୁନାହିଁ ଓ ଭାରତ ଓ ପାକିସ୍ତାନର ସଂସ୍କୃତିରେ ମୌଳିକ ପ୍ରଭେଦ ଅଛି ବୋଲି ଭାବୁନାହିଁ । ସେ ଦେଶ ଓ ଏ ଦେଶର ଲୋକଚରିତ୍ର ସମାନ । ତେଣୁ ପାକିସ୍ତାନର ଘଟଣାରୁ ଆମକୁ ଗମ୍ଭୀର ଭାବରେ ଚିନ୍ତା କରିବାକୁ ହେବ । ଏବେ ସେନାବାହିନୀର ସର୍ବୋଚ୍ଚ-କର୍ତ୍ତାମାନଙ୍କର ଦେଶରକ୍ଷା ମନ୍ତ୍ରୀଙ୍କ ସହିତ ମତଭେଦ ହେବାରୁ ସେମାନେ ଇସ୍ତଫା ଦେଇଥିଲେ । ପରେ ଅବଶ୍ୟ ଜଣାଗଲା ଯେ, ଏ ମତଭେଦ ବୃକଗରେ ପଦୋନ୍ନତି ସଂକ୍ରାନ୍ତ କ୍ଷୁଦ୍ର ସମସ୍ୟା ନେଇ ଘଟିଥିଲା । ମାତ୍ର ପବନ କୁଆଡ଼େ ବହୁଛି, ଏହି ଘଟଣାରୁ ତାର ସୂଚନା ମିଳେ । ସାମରିକ କର୍ତ୍ତୃପକ୍ଷଙ୍କ ଉପରେ ବେସାମରିକ କର୍ତ୍ତୃପକ୍ଷଙ୍କର ପୂର୍ଣ୍ଣ ପ୍ରାଧାନ୍ୟ ରହିବା ଉଚିତ, ଏ କଥାଟି ଆମର ପ୍ରଧାନମନ୍ତ୍ରୀ ଏହା ଭିତରେ କେତେଥର ଧୀର ଅଥଚ ଦୃଢ଼ଭାବରେ ଘୋଷଣା କରିଲେଣି । ଗଣତନ୍ତ୍ରର ଏଇଟା ଅତି ଜଣାଶୁଣା ନୀତି । ଆମ ସମ୍ବିଧାନରେ କେଉଁଠି ହେଲେ ବେସାମରିକ ସରକାରୀ କର୍ମଚାରୀ ବା ସାମରିକ କର୍ତ୍ତୃପକ୍ଷଙ୍କର କୌଣସି କ୍ଷମତା ନଥାର

ଉଲ୍ଲେଖ ନାହିଁ । ଜନସାଧାରଣଙ୍କର ପ୍ରତିନିଧି ଲୋକସଭା ହାତରେହିଁ ସବୁ କ୍ଷମତା ରହିଛି । ଏ ଅବସ୍ଥାରେ ଏପରି ଘୋଷଣା କରି ରଖିବା କାହିଁକି ଆବଶ୍ୟକ ହେଉଛି ?

ପାକସ୍ଥାନ, ବର୍ମା, ମିଶର ଓ ସୁଦାନର ଘଟଣାରୁ ସ୍ୱତଃ ମନରେ ପ୍ରଶ୍ନ ଉଠେ ଯେ, ପ୍ରକୃତ କ୍ଷମତା କାହା ହାତରେ ରହିଛି ? ଭସ୍ମାସୁର ମହାଦେବଙ୍କଠାରୁ ବର ପାଇ ତାଙ୍କୁହିଁ ଭସ୍ମ କରିବାକୁ ଗୋଡ଼ାଇଲା ପରି ଆମେ ଯାହାଙ୍କ ହାତରେ ଶାସନର ଦଣ୍ଡଶକ୍ତି, ମନୁଷ୍ୟକୁ ହତ୍ୟା କରିବା ଶକ୍ତି ଦେଉଛୁ, ସେହି ସୈନ୍ୟବାହିନୀ ଆଜି ଲୋକଙ୍କ ପଛରେ ଗୋଡ଼ାଉଛନ୍ତି । ଏ ଦଣ୍ଡଶକ୍ତି ଏକ ସମୟରେ ସାମାନ୍ୟ କଥା ଥିଲା । ଧର୍ମଲୋକ ଘର ଜଗିବାପାଇଁ ନେପାଳୀ ବା ଭୋଜପୁରୀ ଦରୱାନ ରଖେ । ସେ ଦରୱାନ ଘର ଉପରେ ଅଧିକାର ସାବ୍ୟସ୍ତ କରିବ, ଏ ପ୍ରଶ୍ନ କେବେ ଉଠେ ନାହିଁ । ଗାଁର ଅଜ୍ଞ ହରିଜନଙ୍କୁହିଁ ଦୁଇ ଚାରି ଟଙ୍କାକୁ ଚୌକିଦାର ରଖା ଯାଇଥାଏ । ସେହିପରି ସବୁ ଦେଶରେ ଅଜ୍ଞ, ଅଶିକ୍ଷିତ ଲୋକଙ୍କୁହିଁ ସୈନ୍ୟଦଳରେ ରଖା ଯାଉଥିଲା । ମାତ୍ର ଏବେ ପରିସ୍ଥିତି ବଦଳି ଗଲାଣି । ଆଧୁନିକ ବୈଜ୍ଞାନିକ ରଣକୌଶଳ ଚଳାଇବା ପାଇଁ ଅଜ୍ଞଲୋକ ନୁହେଁ ମାତ୍ର ସୁଦକ୍ଷ, ବିଦ୍ୱାନ, ଚରିତ୍ରବାନ ଲୋକ ଦରକାର । ସେମାନଙ୍କୁ ଏବେ ପ୍ରତିଯୋଗିତାମୂଳକ ପରୀକ୍ଷା ଦ୍ୱାରା ବଛା ହୁଏ । ନାନା ବୈଜ୍ଞାନିକ ଢଙ୍ଗରେ ସେମାନଙ୍କର ଯୋଗ୍ୟତା ପରୀକ୍ଷା କରାହୁଏ । ଏପରି ବଛାବଛି ସରକାରର ଅନ୍ୟ କୌଣସି ବିଭାଗରେ ହୁଏ ନାହିଁ । ଆଜିର ସେନାପତି କେବଳ ଗୁଣ୍ଡା, ସାହସୀ ହେଲେ ଚଳିବ ନାହିଁ । ସେ ପ୍ରତ୍ୟୁତ୍ପନ୍ନମତି ହେବ, ବୈଜ୍ଞାନିକ କଳାକୌଶଳରେ ଦକ୍ଷ ହେବ; କେବଳ ସେନା ନୁହେଁ, ଯୁଦ୍ଧବେଳେ ଜନତାର ମଧ୍ୟ ନେତୃତ୍ୱ କରି ପାରିବ, ଏପରି ହେବା ଯୁକ୍ତ । ୧୯୫୫ ବନ୍ୟାବେଳେ ଏଠାରୁ

ଯେଉଁ ସୈନ୍ୟବାହିନୀ ସେବା କରିବାକୁ ଆସିଥିଲେ ସେମାନେ କେତେ ସୁସଂସ୍କୃତ, ଭଦ୍ର ଓ ଶିକ୍ଷିତ ତାହା ଯେଉଁମାନେ ସେମାନଙ୍କ ସହିତ ମିଶିଥିବେ ସେମାନେ ଅନୁଭବ କରିଥିବେ । ଆମଦେଶର ଅନ୍ୟ ଯେକୌଣସି ଗୋଟିଏ ଗୋଷ୍ଠୀ— ରାଜନୀତିବାଲା, ବେସାମରିକ କର୍ମଚାରୀ, ଓକିଲ ବା ବେପାରୀଙ୍କୁ ନିଅନ୍ତୁ ତ ଦେଖିବେ ଯେ, ଏ ସମସ୍ତଙ୍କ ତୁଳନାରେ ସୈନ୍ୟବାହିନୀର ଅଫିସରମାନେ ଅନେକ ଗୁଣରେ ଶ୍ରେଷ୍ଠ । ଏଇ ହେଉଛି ଏ ଯୁଗର ନୂଆ ସୈନ୍ୟବାହିନୀ । ଏ ସେନାକୁ ଆମେ କେବଳ ଯୁଦ୍ଧପାଇଁ ବ୍ୟବହାର କରୁନାହୁଁ, ଅନ୍ୟ କାମ ପାଇଁ ମଧ୍ୟ ବ୍ୟବହାର କରୁଛୁ । ଇଂରେଜ ଅମଳରେ ସରକାର ସହିତ ହିଂସା ଅହିଂସା ସବୁ ବାଟରେ ଲଢ଼େଇ ଚାଲିଥିଲା । ମାତ୍ର ସେତେବେଳେ ବି ଯେତେ ସୈନ୍ୟ ଦେଶରେ ଆଭ୍ୟନ୍ତରୀଣ ଶାନ୍ତିରକ୍ଷା ପାଇଁ ଆବଶ୍ୟକ ହେଉ ନଥିଲେ ଏବେ ସେତେ ହେଉଛନ୍ତି । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ, ଲକ୍ଷ୍ନୌ, କଲିକତା ଆଦି ସବୁଠାରେ ଆମେ ଶାନ୍ତିରକ୍ଷା ପାଇଁ ସେନାର ବ୍ୟବହାର ଦେଖୁଛୁ । ଏହିରୂପେ ତାଙ୍କର ହାତରେ ସର୍ବଶ୍ରେଷ୍ଠ କ୍ଷମତା ରହିଛି । ଏମିତି ସ୍ଥଳେ ସେ ସବୁମନ୍ତ୍ରେ ନିଜକୁ ଅଧିକ ଯୋଗ୍ୟ ମନେ କରୁଥିବା ସ୍ଥଳେ ବେସାମରିକ କର୍ତ୍ତୃପକ୍ଷଙ୍କ ହୁକୁମ ମାନିବାଟାକୁ କାହିଁକି ପସନ୍ଦ କରିବେ ? ଏ ପ୍ରଶ୍ନଟା ସାଧାରଣରେ ଆଲୋଚନା କରିବାକୁ ଅନେକେ ଡରୁଛନ୍ତି । କାଳେ ସୈନ୍ୟବାହିନୀ ମୁଣ୍ଡରେ ଏ ଧାରଣା ନଥିବ ଓ ଆଲୋଚନା ଶୁଣି ପଶିଯିବ ଏଇ ଭୟ ହେଉଛି । ରାତିରେ ସାପ ବା ବାଘ ନାଁ ଧରିବା ଯେପରି ଆମ ଦେଶରେ ମନା, ଏ ସେହିପରି କଥା । ଆମେ ଅପ୍ରିୟ ସତ୍ୟଟାକୁ ଏଡ଼େଇ ଯିବାକୁ ଚାହୁଁ ।

ପୁଣି ଗଣତନ୍ତ୍ରର ସ୍ଥିତି ଆମ ଦେଶରେ କ'ଣ ତାହା ଦେଖିବା । ଆମେ ଯେତେବେଳେ ସ୍ୱରାଜପାଇଁ ଲଢ଼ୁଥିଲୁ, ସେତେବେଳେ ଏ ଦେଶର ଲୋକେ ଗଣତନ୍ତ୍ରର ସବୁ ତାତ୍ପର୍ଯ୍ୟ ବୁଝି ଲଢ଼େଇରେ ଲାଗିଥିଲେ ଏହା କହି ହେବନାହିଁ । ବିଦେଶୀ ଶକ୍ତିକୁ ତଡ଼ିବା ସେତେବେଳେ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଯେଉଁ ସାଧାରଣ ଜନତାର ଶକ୍ତି ଆମ ପଛରେ ଥିବାରୁ ଇଂରେଜ ହଟିଲେ, ସେ ଜନତା ମଧ୍ୟ କ'ଣ ଗଣତନ୍ତ୍ରର ତାତ୍ପର୍ଯ୍ୟ ବୁଝି-ଥିଲା ? ସେତ ଆପଣା ଦାରିଦ୍ର୍ୟ ଦୂରହେବାର ଆଶାରେ ହିଁ ସ୍ୱରାଜ୍ୟ ଚାହୁଁଥିଲା । ୧୯୪୨ରେ ଦେଶରେ ଯେଉଁ ଗଣ ଆନ୍ଦୋଳନ ଦେଖା ଦେଇଥିଲା ତାକୁ ଇଂରେଜ ସରକାର ଦବେଇ ଦେଲେ । ଲୋକେ ଏହିପରି ଭାବରେ ଦବି କରି ରହିଥିବା ଅବସ୍ଥାରେ ହିଁ ଆମର ସ୍ୱାଧୀନତା ଆସିଥିଲା । ନେତାମାନଙ୍କ ଉପରେ ବସି ଶାନ୍ତିପୂର୍ଣ୍ଣ କ୍ଷମତା ହସ୍ତାନ୍ତର କରି ଦେଲେ । ଏହା ସାଙ୍ଗେ ସାଙ୍ଗେ ଦେଶରେ ଏକ ଅବାନ୍ତର ହିନ୍ଦୁ ମୁସଲମାନ ଦଙ୍ଗା ମଧ୍ୟ ଲାଗିଗଲା । ତେଣୁ ଲୋକେ ଏ କଥା ଅନୁଭବ କଲେ ନାହିଁ ଯେ, ଦେଶରେ ଏକ ଗଣତନ୍ତ୍ର ଶାସନ ଆରମ୍ଭ ହେଲା । ତେଣୁ ଆଜ. ସରକାରୀ ପକ୍ଷ, ବିଭିନ୍ନ ବିରୋଧୀ ପକ୍ଷ ଓ ଅନ୍ୟ ସମସ୍ତଙ୍କର ସବୁପ୍ରକାର ଚେଷ୍ଟା ଓ ପ୍ରଚାର ସତ୍ତ୍ୱେ ବି ଦେଶର ଜନସାଧାରଣ ଏଇଟା 'ଆମର ଶାସନ' ବୋଲି ଅନୁଭବ କରୁ ନାହାନ୍ତି ।

ଅନ୍ୟପ୍ରକାରର ବିପ୍ଳବରେ ଲୋକେ 'ଯୁଦ୍ଧ ସମିତି' ଗଢ଼ନ୍ତି, ସରକାର ସହିତ ଲଢ଼ନ୍ତି, ସୈନ୍ୟବାହିନୀକୁ ପରାସ୍ତ କରନ୍ତି ବା ନିଜ ଆଡ଼କୁ କରି ନଅନ୍ତି, ଏହିରୂପେ ସାଧାରଣ ଲୋକେ ଅନୁଭବ କରନ୍ତି ଯେ ଶାସନ ବଦଳିଲା । କ୍ଷମତାର ଅନୁଭବ ତାଙ୍କର ହୁଏ ।

ମାତ୍ର ଏ ଦେଶରେ ଏହିକୁ କିଛି ହେଲା ନାହିଁ । ଏହାର ଅବଶ୍ୟ ଗୋଟାଏ ଭଲ ଦିଗ ଅଛି ଯେ, ଦେଶ ଗଣ୍ଡଗୋଳରୁ ବଞ୍ଚିଗଲା, ସଉକାସ୍ପକଳ ଅଦ୍ଭୁତ ଭାବରେ ହାତକୁ ଆସିଗଲା । ମାତ୍ର ଏହାର ମନ୍ଦ ଦିଗ ହେଉଛି, ଲୋକେ ବୁଝିଲେ ନାହିଁ ଯେ, ସେମାନଙ୍କ ହାତକୁ କ୍ଷମତା ଆସିଲା । ଏହାପରି ଏସିଆର ସବୁ ଦେଶରେ ଘଟିଲା । ଗଣତନ୍ତ୍ରର ପତନର ଏ ଏକ କାରଣ । ଦ୍ୱିତୀୟ କଥା ଗଣତାନ୍ତ୍ରିକ ମୂଲ୍ୟବୋଧ, ଅର୍ଥାତ୍ ଆମେ ଯେତେ ଅସୁବିଧା ଭିତରେ ଥିଲେ ମଧ୍ୟ ଗଣତନ୍ତ୍ରର ଟେକ ରଖିବା ପାଇଁ ଲଢ଼େଇ କରିବୁ, ଏ ମୂଲ୍ୟବୋଧ ଆମ ଦେଶର ମଧ୍ୟବିତ୍ତ ବା ଗରିବ କୋଉ ଶ୍ରେଣୀ ଭିତରେ ହେଲେ ରହିଛି କି ? ପାକିସ୍ତାନରେ ସାମରିକ-ଶାସନର ତ କୌଣସି ବିରୋଧ ହେଲା ନାହିଁ ? ହୁଏତ ତାହା ହେଉଥିଲେ ହଙ୍ଗେରୀ ପରି ତାହାକୁ ନିର୍ମମ ଭାବରେ ଦଳେଇ ଦିଆ ଯାଇଥାନ୍ତା, ମାତ୍ର ପଚିଶ ପଚାଶ ହଜାର ଲୋକେ ପ୍ରତିବାଦ ତ କରିଥାନ୍ତେ, ଜେଲ ଯାଇଥାନ୍ତେ, ମାଡ଼ ଖାଇଥାନ୍ତେ । ମାତ୍ର ସାମରିକ ଶାସନ ଜାରି ହେବାରୁ ସେଠି ତ ଲୋକେ ସ୍ୱସ୍ତିର ନିଶ୍ୱାସ ପକାଇଲେ । ଏଇଠାହିଁ ସବୁଠାରୁ ଭୟଙ୍କର କଥା ।

ତୃତୀୟ କଥା, ଆମ ଦେଶର ସମ୍ବିଧାନ ଓକିଲମାନେ ଗଢ଼ିଲେ । ସ୍ୱାଧୀନତା ପାଇଁ ଲଢ଼ିଥିବା ନେତାମାନେ ଯଦି ତାହା ଗଢ଼ିଥା'ନ୍ତେ ତ କିଛି ହୋଇଥାନ୍ତା । ମାତ୍ର ନେହରୁ, ପଟେଲ ପ୍ରଭୃତି ସେଥିରେ ମୁଣ୍ଡ ପୂରାଇଲେ ନାହିଁ । ଗାନ୍ଧୀଜୀ ଯେଉଁ ସମ୍ବିଧାନର ଢାଞ୍ଚା ଦେଲେ ତାହା ମଧ୍ୟ ଏକ ମୂର୍ଖାମିଆ ଜିନିଷ ବୋଲି ସେମାନେ ମନେ କଲେ । ଅମ୍ବେଡ଼କର, ଆୟଙ୍ଗାର ପ୍ରଭୃତି ଓକିଲମାନଙ୍କ ହାତରେ ସେ ଭାର ପଡ଼ିଲା । ସେମାନେ ଏପରି ଏକ ସମ୍ବିଧାନ ଗଢ଼ିଲେ ଯେ, ତାକୁ ଦେଖି ସେମାନଙ୍କର

ଗୁରୁ, ବିଲାତର ବିଶିଷ୍ଟ ଆଇନଜ୍ଞ ସାର୍ ଆଇଭର୍ ଜେନିଂସ କହିଥିଲେ ଯେ, ଏହା ଓକିଲମାନଙ୍କ ପାଇଁ ଏକ ସ୍ୱର୍ଗ ହୋଇଛି । ଆମେ ଏ ସମ୍ବିଧାନ ଭିତରେ ଦଳଗତ ଗଣତନ୍ତ୍ରର ନମୁନାଟା ଇଂଲଣ୍ଡରୁ ନେଇ ନେଲେ । ଇଂରେଜ ପଳାଇଲା ପରେ ଗ୍ରହଣ ହେବା ସହଜ, ମାତ୍ର ତଥାପି ଆମେ ବିଗୃହ୍ ଦେଖିବା ତ ୟୁରୋପର ସାନସାନ ଖେଳଘର ପରି ଦେଶମାନଙ୍କର ଗଣତନ୍ତ୍ର ଏ ଦେଶର ଅସଂଖ୍ୟ ଜାତି, ଧର୍ମ, ଭାଷା, ଆଦିକୁ ଧରି ଚଳିବା ସମ୍ଭବ କମ୍ । ଆମ ଦେଶରେ ଗାଁମାନଙ୍କର ଲୋକେ ଦୁଇଥର ଭୋଟ ଦେଲେଣି । ମାତ୍ର ସେମାନେ ଗଣତନ୍ତ୍ରର ମୂଳକଥାଟା କେତେଦୂର ବୁଝିଲେଣି ? ଆମ ରାଜନୀତିକ ଦଳମାନେ ଲୋକଙ୍କୁ ଗଣତନ୍ତ୍ରର ବିଷୟର ବୁଝାଇ ନାହାନ୍ତି । ଭୋଟ ବେଳେ ଅତି ତଳସ୍ତରର କାରବାର ଚଳୁଛି । ଜାତିଭେଦ ଆଦିର ସୁବିଧା ନିଆ ହେଉଛି ଓ ସ୍ୱରାଜ୍ୟର ପୂର୍ବ ଅପେକ୍ଷା ଏବେ ଜାତିଭେଦ ଭାଷାଭେଦ ଆଦିର ବଳ ବେଶୀ ହେଲାଣି ।

ପୁଣି ଇଂଲଣ୍ଡ, ଫ୍ରାନ୍ସ ବା ଜର୍ମାନୀ ଆଦିରେ ଯୋଜନା ଗଢ଼ିବାର ସମସ୍ୟା ନ ଥିଲା । ସେଠି ତ ଅନ୍ଧାଧୁନିଆ କାରବାର ଚାଲିଲା ଓ ନାନା ଦୁଃଖ ଦୁର୍ଦ୍ଦଶା ଭିତର ଦେଇ ସେମାନଙ୍କର ଅର୍ଥନୀତି ଗଢ଼ି ଉଠିଲା । ସାମ୍ରାଜ୍ୟର ଅଧୀନସ୍ଥ ଦେଶମାନଙ୍କର ଧନ ସେମାନଙ୍କୁ ମିଳିଗଲା । ଧନୀଦରିଦ୍ର ଭେଦ ଯୋଗୁଁ ଗୋଟାଏ ଆଡ଼େ ଗରିବ ମଲେ ତ ଅନ୍ୟ ଆଡ଼େ 'ପୁଞ୍ଜି ସଂଚୟ' ସମ୍ଭବ ହେଲା । ମାତ୍ର ଏସିଆର ଦରିଦ୍ର ଦେଶମାନଙ୍କରେ ତ ଦାରିଦ୍ର୍ୟ ଲୋପ ଓ ସମତା ସ୍ଥାପନପାଇଁ ଯୋଜନାର ଆବଶ୍ୟକତା ରହିଛି ।

ଏଠିତ ଯୋଜନା ଅନୁସାରେ ଦଶ ପନ୍ଦର ବର୍ଷ ଆଗରୁ ଭାବୀର କାମ କରା ହେଉଛି । ଏପରି କରିବାକୁ ହେଲେ ଆମକୁ

ମାତ୍ର ଏ ଦେଶରେ ଏସବୁ କିଛି ହେଲା ନାହିଁ । ଏହାର ଅବଶ୍ୟ ଗୋଟାଏ ଭଲ ଦିଗ ଅଛି ଯେ, ଦେଶ ଗଣ୍ଡଗୋଳରୁ ବର୍ତ୍ତିଗଲା, ସରକାରୀକଳ ଅଦ୍ଭୁତ ଭାବରେ ହାତକୁ ଆସିଗଲା । ମାତ୍ର ଏହାର ମନ୍ଦ ଦିଗ ହେଉଛି, ଲୋକେ ବୁଝିଲେ ନାହିଁ ଯେ, ସେମାନଙ୍କ ହାତକୁ କ୍ଷମତା ଆସିଲା । ଏହିପରି ଏସିଆର ସବୁ ଦେଶରେ ଘଟିଲା । ଗଣତନ୍ତ୍ରର ପତନର ଏ ଏକ କାରଣ । ଦ୍ୱିତୀୟ କଥା ଗଣତାନ୍ତ୍ରିକ ମୂଲ୍ୟବୋଧ, ଅର୍ଥାତ୍ ଆମେ ଯେତେ ଅସୁବିଧା ଭିତରେ ଥିଲେ ମଧ୍ୟ ଗଣତନ୍ତ୍ରର ଟେକ ରଖିବା ପାଇଁ ଲଢ଼େଇ କରିବୁ, ଏ ମୂଲ୍ୟବୋଧ ଆମ ଦେଶର ମଧ୍ୟବିତ୍ତ ବା ଗରିବ ଲୋକ ଶ୍ରେଣୀ ଭିତରେ ହେଲେ ରହିଛି କି ? ପାକିସ୍ତାନରେ ସାମରିକ-ଶାସନର ତ କୌଣସି ବିରୋଧ ହେଲା ନାହିଁ ? ହୁଏତ ତାହା ହୋଇଥିଲେ ହଙ୍ଗେରୀ ପରି ତାହାକୁ ନିର୍ମମ ଭାବରେ ଦବେଇ ଦିଆ ଯାଇଥାନ୍ତା, ମାତ୍ର ପଚିଶ ପଚାଶ ହଜାର ଲୋକେ ପ୍ରତିବାଦ ତ କରିଥାନ୍ତେ, ଜେଲ ଯାଇଥାନ୍ତେ, ମାଡ଼ ଖାଇଥାନ୍ତେ । ମାତ୍ର ସାମରିକ ଶାସନ ଜାରି ହେବାରୁ ସେଠି ତ ଲୋକେ ସ୍ୱସ୍ତିର ନିଶ୍ୱାସ ପକାଇଲେ । ଏଇଠାହିଁ ସବୁଠାରୁ ଭୟଙ୍କର କଥା ।

ତୃତୀୟ କଥା, ଆମ ଦେଶର ସମ୍ବିଧାନ ଓକିଲମାନେ ଗଢ଼ିଲେ । ସ୍ୱାଧୀନତା ପାଇଁ ଲଢ଼ିଥିବା ନେତାମାନେ ଯଦି ତାହା ଗଢ଼ିଥା'ନ୍ତେ ତ କିଛି ହୋଇଥାନ୍ତା । ମାତ୍ର ନେହରୁ, ପଟେଲ ପ୍ରଭୃତି ସେଥିରେ ମୁଣ୍ଡ ପୂରାଇଲେ ନାହିଁ । ଗାନ୍ଧୀଜୀ ଯେଉଁ ସମ୍ବିଧାନର ଖସଡ଼ା ଦେଲେ ତାହା ମଧ୍ୟ ଏକ ମୂର୍ଖାମିଆ ଜିନିଷ ବୋଲି ସେମାନେ ମନେ କଲେ । ଅମ୍ବେଡ଼କର, ଆୟଙ୍ଗାର ପ୍ରଭୃତି ଓକିଲମାନଙ୍କ ହାତରେ ସେ ଭାର ପଡ଼ିଲା । ସେମାନେ ଏପରି ଏକ ସମ୍ବିଧାନ ଗଢ଼ିଲେ ଯେ, ତାକୁ ଦେଖି ସେମାନଙ୍କର

ମାତ୍ର ଏ ଦେଶରେ ଏହବୁ କିଛି ହେଲା ନାହିଁ । ଏହାର ଅବଶ୍ୟ ଗୋଟାଏ ଭଲ ଦିଗ ଅଛି ଯେ, ଦେଶ ଗଣ୍ଡଗୋଳକୁ ବଞ୍ଚିଗଲା, ସଉକାଶ୍ମକଳ ଅଦ୍ଭୁତ ଭାବରେ ହାତକୁ ଆସିଗଲା । ମାତ୍ର ଏହାର ମନ୍ଦ ଦିଗ ହେଉଛି, ଲୋକେ ବୁଝିଲେ ନାହିଁ ଯେ, ସେମାନଙ୍କ ହାତକୁ କ୍ଷମତା ଆସିଲା । ଏଡ଼ାପର ଏସିଆର ସବୁ ଦେଶରେ ଘଟିଲା । ଗଣତନ୍ତ୍ରର ପତନର ଏ ଏକ କାରଣ । ଦ୍ୱିତୀୟ କଥା ଗଣତାନ୍ତ୍ରିକ ମୂଲ୍ୟବୋଧ, ଅର୍ଥାତ୍ ଆମେ ଯେତେ ଅସୁବିଧା ଭିତରେ ଥିଲେ ମଧ୍ୟ ଗଣତନ୍ତ୍ରର ଟେକ ରଖିବା ପାଇଁ ଲଢ଼େଇ କରିବୁ, ଏ ମୂଲ୍ୟବୋଧ ଆମ ଦେଶର ମଧ୍ୟବିତ୍ତ ବା ଗରିବ କୋଣ୍ଡ ଶ୍ରେଣୀ ଭିତରେ ହେଲେ ରହିଛି କି ? ପାକିସ୍ତାନରେ ସାମରିକ-ଶାସନର ତ କୌଣସି ବିରୋଧ ହେଲା ନାହିଁ ? ଯଦିଏତ ତାହା ହେଉଥିଲେ ହଙ୍ଗେରୀ ପରି ତାହାକୁ ନିର୍ମମ ଭାବରେ ଦଟେଇ ଦିଆ ଯାଇଥାନ୍ତା, ମାତ୍ର ପଚିଶ ପଚାଶ ହଜାର ଲୋକେ ପ୍ରତିବାଦ ତ କରିଥାନ୍ତେ, ଜେଲ ଯାଇଥାନ୍ତେ, ମାଡ଼ ଖାଇଥାନ୍ତେ । ମାତ୍ର ସାମରିକ ଶାସନ ଜାରୀ ହେବାରୁ ସେଠି ତ ଲୋକେ ସ୍ୱସ୍ତିର ନିଶ୍ୱାସ ପକାଇଲେ । ଏଇଟା ହିଁ ସବୁଠାରୁ ଭୟଙ୍କର କଥା ।

ତୃତୀୟ କଥା, ଆମ ଦେଶର ସମ୍ବିଧାନ ଓକିଲମାନେ ଗଢ଼ିଲେ । ସ୍ୱାଧୀନତା ପାଇଁ ଲଢ଼ିଥିବା ନେତାମାନେ ଯଦି ତାହା ଗଢ଼ିଥା'ନ୍ତେ ତ କିଛି ହୋଇଥାନ୍ତା । ମାତ୍ର ନେହୁରୁ, ପଟେଲ ପ୍ରଭୃତି ସେଥିରେ ମୁଣ୍ଡ ପୂରାଇଲେ ନାହିଁ । ଗାନ୍ଧୀଜୀ ଯେଉଁ ସମ୍ବିଧାନର କଥା ଦେଲେ ତାହା ମଧ୍ୟ ଏକ ମୂର୍ଖାମିଆ ଜିନିଷ ବୋଲି ସେମାନେ ମନେ କଲେ । ଅମ୍ବେଡ଼କର, ଆୟଙ୍ଗାର ପ୍ରଭୃତି ଓକିଲମାନଙ୍କ ହାତରେ ସେ ଭାର ପଡ଼ିଲା । ସେମାନେ ଏପରି ଏକ ସମ୍ବିଧାନ ଗଢ଼ିଲେ ଯେ, ତାକୁ ଦେଖି ସେମାନଙ୍କର

ଗୁରୁ, ବଲାତର ବିଶିଷ୍ଟ ଆଇନଜ୍ଞ ସାର୍ ଆଇଭର୍ ଜେନିଂସ୍ କହିଲେ ଯେ, ଏହା ଓକିଲମାନଙ୍କ ପାଇଁ ଏକ ସ୍ୱର୍ଗ ହୋଇଛି । ଆମେ ଏ ସମ୍ବିଧାନ ଭିତରେ ଦଳଗତ ଗଣତନ୍ତ୍ରର ନମୁନାଟା ଇଂଲଣ୍ଡରୁ ନେଇ ନେଲେ । ସ୍ୱେଚ୍ଛା ଚଳାଇଲା ପରେ ଗ୍ରହଣ କରିବା ସହଜ, ମାତ୍ର ତଥାପି ଆମେ ବିସ୍ମୃତ ଦେଖିବା ଯେ ୟୁରୋପର ସାନସାନ ଖେଳଘର ପରି ଦେଶମାନଙ୍କର ଗଣତନ୍ତ୍ର ଏ ଦେଶର ଅସଂଖ୍ୟ ଜାତି, ଧର୍ମ, ଭାଷା, ଆଦିକୁ ଧରି ଚଳିବା ସମ୍ଭବ କମ୍ । ଆମ ଦେଶରେ ଗାଁମାନଙ୍କର ଲୋକେ ଦୁଇଥର ଭୋଟ ଦେଲେଣି । ମାତ୍ର ସେମାନେ ଗଣତନ୍ତ୍ରର ମୂଳକଥାଟା କେତେଦୂର ବୁଝିଲେଣି ? ଆମ ରାଜନୀତିକ ଦଳମାନେ ଲୋକଙ୍କୁ ଗଣତନ୍ତ୍ରର ବିଷୟ ବୁଝାଉ ନାହାନ୍ତି । ଭୋଟ ବେଳେର ଅତି ଚଳସ୍ତରର କାରବାର ଚଳୁଛି । ଜାତିଭେଦ ଆଦିର ସୁବିଧା ନିଆ ହେଉଛି ଓ ସ୍ୱରାଜ୍ୟର ପୂର୍ବ ଅପେକ୍ଷା ଏବେ ଜାତିଭେଦ ଭାଷାଭେଦ ଆଦିର ବଳ ବେଶୀ ହେଲାଣି ।

ପୁଣି ଇଂଲଣ୍ଡ, ଫ୍ରାନ୍ସ ବା ଜର୍ମାନୀ ଆଦିରେ ଯୋଜନା ଗଢ଼ିବାର ସମସ୍ୟା ନ ଥିଲା । ସେଠି ତ ଅନ୍ଧାଧୁନ୍ଧିଆ କାରବାର ଚାଲିଲା ଓ ନାନା ଦୁଃଖ ଦୁର୍ଦ୍ଦଶା ଭିତର ଦେଇ ସେମାନଙ୍କର ଅର୍ଥନୀତି ଗଢ଼ି ଉଠିଲା । ସାମ୍ରାଜ୍ୟର ଅଧୀନସ୍ଥ ଦେଶମାନଙ୍କର ଧନ ସେମାନଙ୍କୁ ମିଳିଗଲା । ଧନୀଦରିଦ୍ର ଭେଦ ଯୋଗୁଁ ଗୋଟାଏ ଆଡ଼େ ଗରିବ ମଲେ ତ ଅନ୍ୟ ଆଡ଼େ 'ପୁଞ୍ଜି ସଞ୍ଚୟ' ସମ୍ଭବ ହେଲା । ମାତ୍ର ଏସିଆର ଦରିଦ୍ର ଦେଶମାନଙ୍କରେ ତ ଦାରିଦ୍ର୍ୟ ଲୋପ ଓ ସମତା ସ୍ଥାପନପାଇଁ ଯୋଜନାର ଆବଶ୍ୟକତା ରହିଛି ।

ଏଠିତ ଯୋଜନା ଅନୁସାରେ ଦଶ ପନ୍ଦର ବର୍ଷ ଆଗକୁ ଭାବିକରି କାମ କରା ହେଉଛି । ଏପରି କରିବାକୁ ହେଲେ ଆମକୁ

ତୁରନ୍ତ ଲାଭର ଆଶା ଛାଡ଼ିବାକୁ ହେବ । ମାତ୍ର ଦଳଗତ ରାଜନୀତିରେ ତ ନଗଦ ଲାଭର ଲୋଭ ଦେଖାଇ ପରସ୍ପର ବିରୁଦ୍ଧରେ ପ୍ରଚାର କରାହୁଏ । ଏଥିରେ ଯୋଜନା କିପରି ଚାଲିବ ?

ଓଡ଼ିଶାରେ ଭୂରାଜସ୍ୱକୁ ସବୁ ଜିଲାରେ ଗୋଟାଏ ସମାନ ହାରରେ ପକାଇବା ପାଇଁ ଅନେକ ଦିନୁ ବିଚାର ଚାଲିଛି । ମୁଦ୍ରା-ସ୍ଫୀତି ଫଳରେ ଟଙ୍କାର ଦାମ କମିବା ଯୋଗୁଁ ଅନେକ ଆଡ଼େ ଏକରକୁ ଟଙ୍କାଏ, ଆଠଅଣା ଭୂରାଜସ୍ୱର ଅର୍ଥ କେବଳ ନାମମାତ୍ର ରହିଲାଣି । ମାତ୍ର ଦୁଇଟା ନିର୍ବାଚନ ଚାଲିଗଲା, ତାହା ହୋଇ ପାରିଲା ନାହିଁ । ଜମିଜମା ସଂସ୍କାରର ଗୁରୁତ୍ୱ ବିଷୟରେ ବାହାରୁ ଆସୁଥିବା ପ୍ରତ୍ୟେକ ବିଶେଷଜ୍ଞ ପରାମର୍ଶଦାତା ଜୋର ଦେଉଛନ୍ତି । କାରଣ ଖାଦ୍ୟ ଉତ୍ପାଦନ ନ ବଢ଼ିଲେ ଯୋଜନା ସଫଳ ହେବ ନାହିଁ ଓ ଭୂସଂସ୍କାର ନ ହେଲେ ଖାଦ୍ୟ ଉତ୍ପାଦନ ବଢ଼ିବ ନାହିଁ । ମାତ୍ର ଭୂସଂସ୍କାରର ବିରୋଧ ସବୁ ଜମିମାଲିକ କରୁଛନ୍ତି । ଏପରି କି ପଚିଶ ଏକରବାଲାର ଦେଖାଦେଖି ପାଞ୍ଚ ଏକରବାଲା ବି ହରିଜନକୁ ଜମି ମିଳିବାରେ କୁଳଟା ଚାଷୀର ଆପତ୍ତି ରହିଛି । ଏହିପରି ସର୍ବତ୍ର ଚାଲିଛି ।

କଲିକତାରେ ଖାଦ୍ୟ ଆନ୍ଦୋଳନ ହେଲା, ମାତ୍ର କ'ଣ କଲେ ଖାଦ୍ୟ ଉତ୍ପାଦନ ବଢ଼ିବ, ସେକଥା ଗମ୍ଭୀର ଭାବରେ ବିଚାର ହେଉଛି କମ୍ । ପ୍ରଫୁଲ୍ଲ ସେନ୍ ତଡ଼ା ଖାଇଲେ, ଆନ୍ଦୋଳନ କରି କଲିକତାର ସମସ୍ତେ ମଲେ ବା କମ୍ୟୁନିଷ୍ଟ ସରକାର ଆସିଲେ ବି, ଆଜି ଯେପରି କାରବାର ଚାଲିଛି ସେଥିରେ କେବେହେଲେ ଖାଦ୍ୟ ସମସ୍ୟାର ସମାଧାନ ହେବ ?

ଆମର ସମସ୍ତ ଶିକ୍ଷା ପଦ୍ଧତି ତ ଓଲଟା ଦଗରେ ଚାଲିଛି । ଯେ ପାଠ ପଢ଼ିଲା ସେ ହଳ ଧରିବ ନାହିଁ, ଏଇ ହେଲା ଏବର

ସଂସ୍କାର । ଯେଉଁମାନେ କୃଷି ମହାବିଦ୍ୟାଳୟରୁ ପାଠପଢ଼ି ଆସୁଛନ୍ତି, ସେମାନେ ସୁଦ୍ଧା ହଳ ଧରୁନାହାନ୍ତି । ଏ ଯୁଗରେ ତ ଆଉ ଏହା ସମ୍ଭବ ନୁହେଁ ଯେ, କେବଳ ବ୍ରାହ୍ମଣ, କରଣ ପାଠ ପଢ଼ିବେ ଓ ଅନ୍ୟମାନେ ଅଶିକ୍ଷିତ ରହିବେ । ଯଦିଓ ଆଜି ବ୍ରାହ୍ମଣ କରଣ ହିଁ ପାଠପଢ଼ାରେ ପ୍ରଧାନସ୍ଥାନ ଦଖଲ କରିଥିବାର ବିଶ୍ୱବିଦ୍ୟାଳୟର ପାସ୍‌ତାଲିକା ଦେଖିଲେ ଜଣାପଡ଼ିବ, ତଥାପି ସବୁ ଶ୍ରେଣୀଙ୍କ ପାଇଁ ଶିକ୍ଷାର ଯୋଜନା ତ କ୍ରମେ ବଢ଼ିଚାଲିଛି ଓ ବଢ଼ିବ । ତା'ଉପରେ ପୁଣି ଗାଁର ପିଲାଏ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଦ୍ୱାରା ଜାଣିଲେଣି ଯେ, କଥା ପାଠରେ ନାହିଁ । ପେଟରେ ପାଠ ନଥିଲେ ବି ପାଠସାଙ୍ଗରେ ଜଡ଼ିତ ପେଣ୍ଟ ଖଣ୍ଡିକ ଯଦି ଅଙ୍ଗରେ ଥିବ ତାହାହେଲେ ବି ଦେହ ମିହନ୍ତରୁ ମୁକ୍ତି ମିଳିଯିବ । ତେଣୁ ଗାଁ ପିଲାଏ ଏବେ କୋଟ ପେଣ୍ଟ ଗଳେଇ ଦେଇ କୃଷି କାମରୁ ମୁକ୍ତ ହୋଇ ଯାଉଛନ୍ତି । ଏହିପରି ଶିକ୍ଷା ଏଠି ଚାଲିଛି ।

ଇଂଲଣ୍ଡ, ଫ୍ରାନ୍‌ସ, ଆମେରିକା, ରୁଷିଆ ଆଦି ଅନ୍ୟ ଯେ କୌଣସି ଦେଶର ଶିକ୍ଷା ପଦ୍ଧତି ସହିତ ତୁଳନା କଲେ ଦେଖାଯିବ ଯେ, ସେ ଦେଶର ପିଲାମାନେ ବରାବର ଦେହ ମିହନ୍ତ କରନ୍ତି, କିନ୍ତୁ ଏ ଦେଶରେ ତାହା ଚଳୁ ନାହିଁ । ତେଣୁ ମୌଳିକ ଶିକ୍ଷା ଲୋକପ୍ରିୟ ହେଉନାହିଁ । ବିଶେଷଜ୍ଞମାନେ ମୌଳିକ ଶିକ୍ଷାକୁ ଭଲ ବୋଲି କହିଲେ ବି କଂଗ୍ରେସ ସରକାର ସୁଦ୍ଧା ତାକୁ କାର୍ଯ୍ୟରେ ପରିଣତ କରିବାକୁ ଡରୁଛନ୍ତି । କାମ କରିବା ପ୍ରତି ଏ ଦେଶରେ ଏତେ ଅନ୍ଧ ବିରୋଧ ରହିଛି, ଆମ ମଧ୍ୟବିତ୍ତ ଘର-ମାନଙ୍କରେ ପିଲାମାନଙ୍କୁ ଲୁଗାପାଲଟିବା, ବାସନ ମାଜିବା ବା ପାଣି ଗଡ଼େଇକରି ପିଇବାକୁ ସୁଦ୍ଧା ଶିଖାଯାଏ ନାହିଁ । ଓଡ଼ିଶାର ଜଣେ ଜଜ୍‌ସାହେବ ଥରେ ରେଲଗାଡ଼ିରେ ଯାଉଥିବା ବେଳେ

ଅନ୍ୟ ଜଣେ ସହଯାତ୍ରୀ ଲକ୍ଷ କଲେ ଯେ, ସେ ବହୁତ ସମୟ ହେଲା ବଡ଼ ଛଟପଟ ହେଉଛନ୍ତି । ସେ ବେମାର ଅଛନ୍ତି ଭାବିକ ସହଯାତ୍ରୀ ଜଣକ ତାଙ୍କୁ କାରଣ ପଚାରିଲେ ଓ ସାହାଯ୍ୟ କରିବାକୁ ଉଦ୍ୟତ ହେଲେ । ଜଜ୍‌ସାହେବ କହିଲେ, ମୋ ଚାକରଟା ନ ଆସିଥିବାରୁ ଅସୁବିଧା ହେଉଛି । ମତେ ଶୋଷ କଲଣି, ସେ ଆସିଲେ ପାଣି ଦିଅନ୍ତା । ଅଥଚ ସୋରେଇ ଓ ଗିଲାସ ତାଙ୍କର ପାଖରେ ରଖା ହୋଇଥିଲା । ଏଇ ଆମର ଅବସ୍ଥା । ଶିକ୍ଷା ପଦ୍ଧତି ନ ବଦଳିଲେ ବନ୍ଧ ଆସିଲେ ବି ଖାଦ୍ୟ ଉତ୍ପାଦନ ବଢ଼େଇ ପାରିବେ ନାହିଁ ।

ଇଂଲଣ୍ଡ, ଆମେରିକାକୁ ଆମେ ଗୁରୁ କରି ସବୁ ଶିଖିଛୁ; କିନ୍ତୁ ଫଳରେ ହାତରେ କାମ କରିବା ଢଙ୍ଗଟା ଶିଖୁନାହୁଁ । ଆମର ଏଠି ଫାଇଲ୍ ଖଣ୍ଡେ ହାତରେ ଧରି ସୁଦ୍ଧା ହାକିମ ଯାଇ ପାରିବେ ନାହିଁ, ମନ୍ତ୍ରୀ ଆସିଲା ବେଳକୁ କବାଟ ଖୋଲି ଦେବାକୁ ଦୁଇ ତିନିଜଣ ଚପରାଶି ପୋଷା ହୋଇଥିବେ । ବିଦେଶୀମାନେ ଏସବୁ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି, ହସନ୍ତି ।

ଏହିସବୁ ପରିସ୍ଥିତି ଯୋଗୁଁ ମଧ୍ୟ ଏ ଦେଶରେ ପ୍ରକୃତ କାର୍ଯ୍ୟକାରୀ କ୍ଷମତା ଥିବା ସରକାର ସମ୍ଭବ ହେଉନାହିଁ । ରାଜନୀତିକ କ୍ଷେତ୍ରରେ ଆମର ଆଚରଣ କୌଣସି ସର୍ବମାନ୍ୟ ନୀତିକୁ ମାନି ଚଳୁନାହିଁ । ବିଶିଷ୍ଟ ଚିନ୍ତକ ଓ୍ୱାଲ୍‌ଟର୍ ଲିପ୍‌ମ୍ୟାନ୍ ମଧ୍ୟ ଏହାର ଆବଶ୍ୟକତା ଉପରେ ଜୋର୍ ଦେଇଛନ୍ତି । ଏହାର ଅଭାବ ଯୋଗୁଁ କେରଳରେ କମ୍ୟୁନିଷ୍ଟ ସରକାରର ପତନ ଘଟାଇବାପାଇଁ ସବୁପ୍ରକାର ଅଗଣତାନ୍ତ୍ରିକ ଉପାୟ ଅବଲମ୍ବନ କରାହେଲା । ଗଣତନ୍ତ୍ରକୁ ଚଳାଇବାକୁ ହେଲେ ଦଳମାନଙ୍କର ଯେଉଁ ସବୁ ବିଷୟରେ ମତୈକ୍ୟ ରହିବା ଆବଶ୍ୟକ, ତାହା

ଭିତରେ ପାର୍ଟି ପାଇଁ ଧନ ସଂଗ୍ରହର ଚିନ୍ତା ଅନ୍ୟତମ । ମାତ୍ର ଏ ଭିତରେ ଆମର କ'ଣ ହେଉଛି ? ଯେଉଁ ଦଳ କ୍ଷମତାରେ ରହିଛି ସେ ଧନୀ ଲୋକଙ୍କୁ କେତେକ ଟିକସ ଛାଡ଼ କରିଦେଇ ସେମାନଙ୍କ-ଠାରୁ ଦଳପାଇଁ ଚାନ୍ଦା ସଂଗ୍ରହ କରୁଛି । ପୁଣି ଅନ୍ୟ ଦଳମାନେ କ'ଣ କରୁଛନ୍ତି ? ଯେଉଁ ଧନୀଲୋକେ କ୍ଷମତାରେ ଥିବା ଦଳଠାରୁ ସୁବିଧା ନେଉଛନ୍ତି, ସେହିମାନଙ୍କଠାରୁ ବିରୋଧୀ ଦଳ ଟଙ୍କା ନେଉଛନ୍ତି । ଅନ୍ୟ ଯେଉଁ ବାଟରେ, ଜନସାଧାରଣଙ୍କଠାରୁ ପାର୍ଟିପାଇଁ ସମର୍ଥନ ଓ ସାହାଯ୍ୟ ମିଳିବ ତାହା ଚିନ୍ତା କରାଯାଉ ନାହିଁ ।

ପୁଣି ନିର୍ବାଚନରେ ଆଜିକାଲି ଏତେ ଖରଚ କରିବାକୁ ପଡ଼ୁଛି ଯେ, ଠିକ୍ ହିସାବ ଦାଖଲ ନ କଲେ ଚଳୁନାହିଁ, କୌଣସି ଗରିବ ଲୋକପକ୍ଷରେ ଭୋଟରେ ଛିଡ଼ା ହେବା ଆଉ ସମ୍ଭବ ନୁହେଁ । ଏହାର କୌଣସି ପ୍ରତିକାର ନ ହେବା ଯୋଗୁଁ ପ୍ରାମାଣିକତା ରହୁ-ନାହିଁ ଓ ଗଣତନ୍ତ୍ର ଅଚଳ ହେଉଛି । ମୁଁ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଦସ୍ୟ ଥିବାବେଳେ ଥରେ ଏ ପ୍ରଶ୍ନ ଉଠେଇଥିଲି । ମୋ କଥା ଶୁଣିସାରିବା ପରେ ନେତାମାନେ କହିଲେ—ଯାହା ହେଉ ତମେ ବେଣ୍ ଇସ୍କୁଲ ପିଲାଙ୍କପରି ସରଳ ଅଛ ଓ ଭଲ କଥାଟିଏ କହିଲ । ଏତିକିରେ ସେ ଆଲୋଚନା ରହିଲା ।

କେରଳରେ କମ୍ୟୁନିଷ୍ଟଙ୍କୁ ଦୋଷ ଦିଆଗଲା ମାତ୍ର ତାଙ୍କଠାରୁ ଯେଉଁ କଥାଟା ଶିଖିବାର ଥିଲା ତାହା କେହି ଶିଖିଲେ ନାହିଁ । ତାଙ୍କର ଗୋଟିଏ ଗୁଣ ଯେ ସେଠା ସରକାର ଯେଉଁ ନୀତି ନିର୍ଣ୍ଣୟ କରୁଥିଲେ ତାହାକୁ ସେ କାର୍ଯ୍ୟକାରୀ କରିପାରୁଥିଲେ । ଆମର ଏଠି ଉପରସ୍ତରଠାରୁ ଆରମ୍ଭ କରି ଯେତେ ଆଇନ ହେଲା, ସେଥିରୁ କୌଣସିଟି କାର୍ଯ୍ୟକାରୀ ହୋଇ ପାରିନାହିଁ, କାରଣ କଂଗ୍ରେସ ଦଳ

ଭିତରେ ଶୃଙ୍ଖଳାହୀନତା ରହିଛି । ତେଣୁ କଂଗ୍ରେସ କୌଣସି ମତ ଗ୍ରହଣ କଲେ ବି କଂଗ୍ରେସ ସରକାରମାନେ ତାକୁ କାର୍ଯ୍ୟକାରୀ କରୁ ନାହାନ୍ତି । କୁହା ଯାଉଛି, ଅମୁକ କଥାଟା ସିନା କଂଗ୍ରେସ ଗ୍ରହଣ କରିଛି, ସରକାର କରିନାହିଁ । କହେ। ଏହାର ମାନେ କ'ଣ ? କଂଗ୍ରେସରେ ସେଇ ଜବାହାରଲାଲ, ସେଇ ମୋରାରଜୀ, ପନ୍ଥ ଅଛନ୍ତି ନା ଆଉ କିଏ ? ଜଣେ ମନ୍ତ୍ରୀ କହିଲେ—ଏକଥାଟା ତ ମୁଁ ଠିକ୍ ବୁଝିଛି ମାତ୍ର ସରକାର ମାନିଲେ ତ ହେବ ? କହେ। ସରକାର ପୁଣି ମନ୍ତ୍ରୀଙ୍କଠାରୁ ଅଲଗା ଆଉ କିଏ ? ନା ଡ଼ି.ପି. ଆଇ । ସେ ମାନିବେ ତ ମନ୍ତ୍ରୀଙ୍କ କଥା ରହିବ ନଚେତ୍ ନାହିଁ । ଏଥିରେ କ'ଣ ଗଣତନ୍ତ୍ର ଚାଲିବ ! ମାତ୍ର କମ୍ୟୁନିଷ୍ଟ ଦଳରେ ଶୃଙ୍ଖଳା ରହିଛି ବୋଲି ସେମାନେ କେରଳରେ ନିଜର ନିର୍ଦ୍ଧାରିତ ମତକୁ କାର୍ଯ୍ୟକାରୀ କରିପାରିଲେ ।

ଏହିସବୁ ଯୋଗୁଁ ଆମ ଦେଶରେ ଗଣତନ୍ତ୍ର ଅଚଳ ଅବସ୍ଥା ଧରିଛି । ଏହାର କେତେକ କାରଣ ଐତିହାସିକ ପରିସ୍ଥିତି ଭିତରେ ରହିଛି ଓ କେତେକ କାରଣ ଆମର ଅପାରଗତା ଓ ଦୁର୍ବଳତା ଭିତରେ ରହିଛି । ଏହାର ପ୍ରତିକାର କଥା ଅନେକେ ଚିନ୍ତା କରୁଛନ୍ତି । ଶାସନର ବିକେନ୍ଦ୍ରୀକରଣ ଏହାର ପ୍ରତିକାରର ଏକ ପନ୍ଥା ବୋଲି ବର୍ତ୍ତମାନ ପ୍ରାୟ ସମସ୍ତେ ସ୍ୱୀକାର କରୁଛନ୍ତି । ମାତ୍ର ସେ ଦିଗରେ ମଧ୍ୟ କିଛି ଅଗ୍ରଗତି ହେଉନାହିଁ । ଏ ଦେଶରେ ଯେଉଁ ଜିଲ୍ଲା ମ୍ୟାଜିଷ୍ଟ୍ରେଟ୍ ଜିଲ୍ଲାର ସର୍ବମୟ କର୍ତ୍ତା ଭାବରେ ଅଛନ୍ତି ଏଭଳି ଦୁନିଆର ଅନ୍ୟ କୌଣସି ଦେଶରେ ନାହିଁ । ଫ୍ରାନ୍ସରେ ପ୍ରିଫେକ୍ଟ୍ ପଦ୍ଧତି ଅଛି, ମାତ୍ର ତାଙ୍କ ସହିତ ପ୍ରତିନିଧି ସଭା ମଧ୍ୟ ରହିଛି । ଏବେ ମଝିରେ ପୁଣି ନିୟମ ହୋଇଥିଲା ଯେ, ମନ୍ତ୍ରୀଙ୍କ ଘର ଉପରେ ରାଷ୍ଟ୍ରୀୟ ପତାକା ଉଡ଼ିପାରିବ ନାହିଁ; ମାତ୍ର ଜିଲ୍ଲା ମ୍ୟାଜିଷ୍ଟ୍ରେଟ୍‌ଙ୍କ ଘର

ଉପରେ ଉଡ଼ିବ । ଲୋକଙ୍କ ଉପରେ ଏହାର ମାନସିକ ପ୍ରଭାବ କ'ଣ ପଡ଼ୁଥିବ ?

ରାଜନୈତିକ ଦଳମାନଙ୍କର ଏବେ ଲୋକଙ୍କ ଉପରେ କୌଣସି ସ୍ୱତନ୍ତ୍ର ପ୍ରଭାବ ନାହିଁ । ସରକାରଙ୍କ ଦ୍ୱାରା ଯେଉଁ କାମ ହେଉଛି ତାହାର ଶ୍ରେୟ ନେବାକୁ ଚେଷ୍ଟା ଚାଲିଛି । ସେଥିପାଇଁ ବି. ଡ଼ି. ଓ. ପ୍ରଭୃତିଙ୍କୁ ହାତରେ ରଖିବା ଉଦ୍ୟମ ଏମ୍.ଏଲ୍.ଏ.ମାନେ କରୁଛନ୍ତି । ଏଇସବୁ କର୍ମଚାରୀଙ୍କ ପିଛା ଧରି ଚାଲିବାହିଁ ଏକମାତ୍ର କାମ ହୋଇଛି । ମୁଁ ମନ୍ତ୍ରୀ ଥିଲାବେଳେ ଗୋଟିଏ ଅଞ୍ଚଳକୁ ଯାଇଥିଲି । ମୋର ସ୍ଥାନୀୟ ଏମ୍. ଏଲ୍. ଏ. ଓ ଅନ୍ୟ ଭଦ୍ରବ୍ୟକ୍ତିମାନଙ୍କ ସହିତ ସାକ୍ଷାତ କରିବାର ଇଚ୍ଛା ଥିଲା । ମୁଁ ଦେଖିଲି ଯେ, ଏଥିପାଇଁ ସେଠାରେ ବ୍ୟବସ୍ଥା କରୁଥିବା ହାକିମ ମୋଟେ ପାଞ୍ଚ ମିନିଟ ସମୟ ରଖିଛନ୍ତି । ମୁଁ ଆପତ୍ତି କଲାରୁ ସେ କହିଲେ—କିଛି ଚିନ୍ତା ନାହିଁ, ତାର ଭିତରେ ସବୁ ଠିକ୍ ହୋଇ ଯିବ, ଆପଣ ଦେଖିନ୍ତୁ । ଏମ୍. ଏଲ.ଏ. ମାନେ ଆସିଲାରୁ ସେ ହାକିମ ସେମାନଙ୍କୁ "ସମୟ ଆଉ ନାହିଁ" ଇତ୍ୟାଦି ଏପରି ଭାବରେ ଧମକେଇ କହିଲେ ଓ ସେମାନେ ମଧ୍ୟ ଏପରି ମୂଷାଟିମାନପରି ମାନି ନେଲେ ଯେ ମୁଁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲି । ଏହାର କାରଣ ହେଉଛି ଯେ, ଏମ୍. ଏଲ. ଏ. ମାନେ ହାକିମଙ୍କୁ ନିଜପ୍ରତି ଅନୁକୂଳ ରଖିବାକୁ ଏତେ ବ୍ୟାକୁଳ ଯେ ତାଙ୍କ କଥାରେ ପ୍ରତିବାଦ କରିବାକୁ ସେମାନଙ୍କର ସାହସ ନାହିଁ । କାଳେ ସେ ନିର୍ବାଚନ ମଣ୍ଡଳରେ କି ବିପଦ ଘଟେଇ ଦେବେ ! ଏହି ଭାବରେ ଆଜି କର୍ମଚାରୀମାନେ ସର୍ବେସର୍ବା ହୋଇ ବସିଛନ୍ତି, ନିଜେଇ ଏ ଯନ୍ତ୍ରଟି ତିଆରି କରି ଆମେ ତାର କବଳରେ ପଡ଼ିଛୁ । ଯେଉଁମାନେ ଶାସନରେ ଅଛନ୍ତି ସେମାନଙ୍କର ନିଜେ କିଛି କରିବାର ଶକ୍ତି ନାହିଁ । ବିଶେଷଜ୍ଞମାନେ ଯେଉଁ ପରାମର୍ଶ ଦେଉଛନ୍ତି, ତାକୁ

ଏଡ଼ିବାର ଶକ୍ତି ମାର୍କ୍ସ, ଟେଣ୍ଡୁ କଲଚି, ପେଶଓ୍ୱାର, ଢାକାର ପ୍ରଧାନ ସହରରେ କୋଲାପ ପଡ଼ିଲା ପର ଏଠି ମଧ୍ୟ ଯଦି କେହି କୋଲାପ ପକାଇ ଦିଏ ତେବେ କେତେ ଲୋକ ଲୁହ ଗଡ଼େଇବେ ସେ ବିଷୟରେ ସନ୍ଦେହ ଅଛି । ସେଠି ସୈନ୍ୟ ବିଭାଗବାଲା ବୁଲିଲେ ଲୋକ । ଜନତାର ମନକୁ ଜିଣି ନେବା ପାଇଁ ନାନା ଉପାୟ ସେମାନେ କରିଗଲେ । ସେକ୍ରେଟାରିଏଟ୍‌କୁ ହାକିମମାନେ ବରାବର ଡେରିରେ ଆସନ୍ତି । ସେଠି ହୁକୁମ ହେଲା, ହାକିମମାନେ ସମସ୍ତେ ହାଫ୍‌ପେଣ୍ଟ ପିନ୍ଧି ଦଶଟା ବେଳକୁ ଅମୁକ ଜାଗାରେ ଆସି ରୁଣ୍ଡ ହେବେ, ସେଠୁ ମିଲିଟାରିବାଲା ତାଙ୍କୁ ଧାଡ଼ିରେ ମାର୍ଚ୍ଚ କରେଇ ଅଫିସକୁ ନେଇଯିବେ । ଏହିପରି କେତେ ଗୁଡ଼ାଏ ଉପର ଦେଖାଣିଆ କଡ଼ାକଡ଼ି କରି, ସେମାନେ ଲୋକଙ୍କୁ ଭୁଲେଇ ଦେଇ ପାରିଛନ୍ତି । ଦୁଧରେ ପାଣି ମିଶିବା ବନ୍ଦ ହୋଇଗଲା, କେତେକ ବେପାରୀଙ୍କ ଉପରେ ଖୁବ୍ କଠିନ ଦଣ୍ଡ ହୋଇଗଲା ଇତ୍ୟାଦି ।

ମାନସିକ ଦୃଢ଼ ସଙ୍କଳ୍ପବଳେ ପରିବର୍ତ୍ତନ କରାଇ ନେଇ ପାରିଲେ ଅନେକ କିଛି କାମ ହୋଇଯାଏ । ଆମର ସ୍ୱରାଜ୍ୟ ହେଲାବେଳେ ଜନତା ଭିତରେ, ସରକାରୀ ମହଲରେ, ସବୁଠି ଗୋଟାଏ ଆଶା ଓ ଆଶଙ୍କା ଥିଲା ଯେ, ଏଥର ଅବଶ୍ୟ କେତେ ଗୁଡ଼ାଏ ମୌଳିକ ପରିବର୍ତ୍ତନ ହେବ । ଆଇ. ସି. ଏସ୍. ହାକିମମାନେ ଭାବୁଥିଲେ— ଏମାନେ ତ ଆମର ଭରମା କଟେଇବେ, ଆମକୁ ଘର ଖଟେଇବେ, ଆମେ କ'ଣ ପାରିବା ? ନ ପାରିବା ତ ଚାକିରି ଛାଡ଼ି ଦେବା, ଆଉ କ'ଣ କରିବା ? ସେତେବେଳେ ଭାରତର ଅର୍ଥମନ୍ତ୍ରୀ ହେବା ପାଇଁ ଜଣେ ବିଶିଷ୍ଟ ବେକଂଗ୍ରେସୀ ଭଦ୍ରବ୍ୟକ୍ତିଙ୍କୁ ଡକା ହୋଇଥିଲା । ସେ ଆପଣା ସ୍ମୃତିକଥାରେ ଲେଖିଛନ୍ତି ଯେ, ସେତେବେଳେ ତାଙ୍କ ସ୍ତ୍ରୀଙ୍କର ଓ ତାଙ୍କର ଭାଳେଣି ପଡ଼ିଲା ଯେ କଂଗ୍ରେସ ଶାସନରେ

ମନ୍ତ୍ରୀ ହେଲେ ତ ଖୁବ୍ ସରଳ ଜୀବନ ବିତେଇବାକୁ ପଡ଼ିବ, ସେପରି କ'ଣ ଆମେ ପାରିବୁ ? ଏହିପରି ଉଚିତ ଉତ୍ତର ଖୁବ୍ ଅଳ୍ପ ଜନଷଗଣ ଧରି ମନକୁ ଖୁବ୍ ଟାଣି କହି ସେ ଦିଲ୍ଲୀ ଆସିଲେ । ମାତ୍ର ଅଳ୍ପ ଦିନ ଭିତରେ ତାଙ୍କର ଆଶଂକା ଲୋପ ହୋଇଗଲା । ସେ ଅବଶ୍ୟ ଉଦ୍ଧତା କରି ସେ କଥାଟା ଲେଖି ନାହାନ୍ତି, ମାତ୍ର ଆମେ ସମସ୍ତେ ଜାଣୁ ଯେ ସେତେବେଳେ ସରଳ ଜୀବନ ବିତାଇ ଆସିଥିବା ଲୋକେ ହିଁ ଓଲଟି ବିଳାସରେ ବୁଡ଼ିଗଲେ । ଦିଲ୍ଲୀରେ ଏ ସବୁ କାଣ୍ଡକାରଖାନାକୁ ଆମର ପ୍ରଧାନମନ୍ତ୍ରୀ ମହାଶୟ ସହ୍ୟ ନ ପାରି ବେଳେବେଳେ ଅଭଦ୍ର, ଭଲ୍‌ଗାର ବୋଲି କହି ଦେଉଛନ୍ତି, ମାତ୍ର ତାହା ସତ୍ତ୍ୱେ ସେ ସବୁ ଚାଲିଛି । ଏଥିରେ ମଧ୍ୟ ଗଣତନ୍ତ୍ର ପ୍ରତି ଏକ ବିପଦର ସଂକେତ ରହିଛି । ଆମେ ଆମର ଚାଲିଚଳନ ବିଷୟରେ ଦୁନିଆର ଗରିବ ଦେଶମାନଙ୍କୁ ନ ଚାହିଁ ଆମେରିକାର ବୈଭବକୁ ଅନୁକରଣ କରି ବସିଲୁ । ଏବେ ଅବଶ୍ୟ ଆମେ ଚୀନ ଦେଶଠାରୁ ଶିଖିବା ପାଇଁ ଉଦ୍ୟମ କରୁଛୁ, ସେ ଦେଶରେ କାହିଁକି ଲକ୍ଷ ଲକ୍ଷ ସମବାୟ ସମିତି ଗଢ଼ା ହୋଇ ପାରୁଛି ଓ ଏଠି ହୋଇ ପାରୁନାହିଁ ତାହା ବୁଝିବା ପାଇଁ ଚେଷ୍ଟା ହେଉଛି । ମୂଳ କଥାଟା ଆମେ ଭୁଲି ଯାଉଛୁ ଯେ, ଏଠି ଇଂରେଜ ଅମଳରେ ଅସହଯୋଗ ଆନ୍ଦୋଳନର ବିରୋଧରେ ଗୋଟାଏ ଓଲଟା ଆକ୍ରମଣ ରୂପରେ ସମବାୟ ଆନ୍ଦୋଳନ ସରକାର ପକ୍ଷରୁ ଆରମ୍ଭ କରା ହୋଇଥିଲା । ସେତେବେଳେ ଯେଉଁ ଢାଞ୍ଚା ତିଆରି ହୋଇଥିଲା ତାହାକୁ ହିଁ ଆମେ ଅତୁଟ ରଖିଛୁ, ବଦଳାଇ ନାହୁଁ । ଆମର ପ୍ରଧାନ ମନ୍ତ୍ରୀ ମଧ୍ୟ ମଝିରେ ମଝିରେ ଖୁବ ଜୋରରେ କହୁଛନ୍ତି ଯେ, ଏସବୁ ବଦଳିବା ଚାହିଁ, ସମବାୟ ଆନ୍ଦୋଳନ ଲୋକଙ୍କ ହାତକୁ ଯିବା ଚାହିଁ, ଅମଲାତନ୍ତ୍ରର ଅକ୍ତିୟାର ଲୋପ

ହେବା ଦୃଷ୍ଟି, ଇତ୍ୟାଦି । ମାତ୍ର ସେ ଯେତେ କହିଲେ ବି ସେ ସବୁ ହୋଇପାରୁ ନାହିଁ । ଏଥିରୁ ପ୍ରଭାବ ଲୋକଙ୍କ ଉପରେ ଏପରି ପଡ଼ୁଛି ଯେ, ଲୋକେ ବିଶ୍ୱାସ ହରାଉଛନ୍ତି, ଭାବୁଛନ୍ତି ଏମାନଙ୍କ-ଦ୍ୱାରା କିଛି ହେବ ନାହିଁ । ନେତାମାନେ ଖରାପ ବୋଲି ଯେ ଏହା ଘଟୁଛି ତା ନୁହେଁ, ଏହା ଶାସନ କଳର ଦୋଷ । ଭାରତ ଓ ଏସିଆର ଅନ୍ୟାନ୍ୟ ଗରିବ ଦେଶର ଏହା ହିଁ ସମସ୍ୟା । ଯଦି ଲୋକେ ସାମାଜିକ ଓ ଆର୍ଥିକ ଜୀବନରେ ସମାନତା ଆସିବାର ନମୁନା ଦେଖନ୍ତେ ତାହା ହେଲେ ଲୋକଙ୍କ ଭିତରେ ଉତ୍ସାହ ଆସନ୍ତା । ମାତ୍ର ତାହା କରିବା ପାଇଁ ଆମର କୌଣସି ମେସିନେରି ବା ଯନ୍ତ୍ର ନାହିଁ ।

ଯେପରି ଖବରକାଗଜ, ଅଳୁଆଁ ଉଠାଇବା ପାଇଁ ଏତେ ଧନ ଖରଚ ହେଉଛି ମାତ୍ର ସେତିକି ହରିଜନ ରହିବା ଅଛି । କେତେ ଲୋକଙ୍କର ଗୋଟାଏ ନ୍ୟସ୍ତ ସ୍ୱାର୍ଥ ହୋଇ ଗଲାଣି । ଅନୁନ୍ନତ ଶ୍ରେଣୀମାନଙ୍କୁ ଯେଉଁସବୁ ବିଶେଷ ସୁଯୋଗ ସୁବିଧା ଦିଆଯାଉଛି ତାହା ଏପରି ଢଙ୍ଗରେ ଦିଆଯାଉଛି ଯେ, କେତେକ ଲୋକ ଏହିପରି ରହିଥିବେ ଓ ତାଙ୍କୁ ଏହିପରି ସୁବିଧା ଦେବା ଜରିଆରେ ଆମେ ତାଙ୍କର ଭୋଟକୁ ହାତରେ ରଖିଥିବୁ ବୋଲି ଏମାନେ ଭାବୁଛନ୍ତି ଏହିପରି ଭାବରେ ଗଣତାନ୍ତ୍ରିକ ମୂଲ୍ୟବୋଧ ବରାବର ବାଧା ପାଉଛି ।

ଯଦି ଲୋକେ ଗଣତାନ୍ତ୍ରିକ ମୂଲ୍ୟର ସ୍ୱାଦ ସାନସାନ କ୍ଷେତ୍ରରେ ଚାଖନ୍ତେ, ତାହା ହେଲେ ସେମାନେ ଗଣତନ୍ତ୍ରର ମୂଲ୍ୟ ବୁଝନ୍ତେ । ମାତ୍ର ଗାଁ ପଞ୍ଚାୟତ ବି ଏ ଦିଗରେ କୌଣସି ବାଟ ଦେଖାଉ ନାହିଁ, କାରଣ ଗାଁରେ ମାଲିକ—ମୂଲିଆ, ଜମିଖିଆ—ଭିକଖିଆ ଏତେ ଭେଦ ରହିଛି ଯେ ଗାଁ ପଞ୍ଚାୟତ ପ୍ରକୃତ ଗଣତାନ୍ତ୍ରିକ ଢଙ୍ଗରେ କାମ କରିପାରୁ ନାହିଁ । ଦାଦାଭାଇ ନଓରୋଜୀ କହିଥିଲେ ଯେ, ଭାରତର

ଗାଁମାନଙ୍କୁ ସହରଗୁଡ଼ିକ ଶୋଷଣ କରି ବଡ଼ ହେଉଛନ୍ତି । ଏକଥା ଅର୍ଥନୀତିଜ୍ଞମାନେ ଏଥିପୂର୍ବରୁ ସ୍ୱୀକାର କରୁ ନ ଥିଲେ । ମାତ୍ର ଏବେ ସେମାନେ ତାହା ସ୍ୱୀକାର କଲେଣି । ଇଂଲଣ୍ଡ ବା ଅନ୍ୟ ସାମ୍ରାଜ୍ୟ ଯେପରି ଉପନିବେଶମାନଙ୍କରୁ ଧନ ନେଇ ବଡ଼ ହେଉଥିଲେ, ସହରଗୁଡ଼ିକର ଗାଁମାନେ ଠିକ୍ ସେହି ଉପନିବେଶ ପରି ହୋଇ ରହିଛନ୍ତି । ବର୍ତ୍ତମାନ ଆମର ଅର୍ଥନୀତି ଯେପରି ଚାଲିଛି ସେଥିରେ ସହର ଓ ଗାଁ ଭିତରେ କାରବାରରେ ସମତା ନାହିଁ କି ନ୍ୟାୟ ନାହିଁ । ଏହାର ପ୍ରତିକାରର ଉପାୟ ହେଉଛି, ଗାଁଗୁଡ଼ିକରେ ଗ୍ରାମଦାନ ଭିତ୍ତିରେ ଗାଁଲୋକଙ୍କର ସ୍ୱାର୍ଥର ସମାନତା ସ୍ଥାପନ କରିବା, ତାହାହେଲେ ସହର ସହିତ ସମାନ ସମାନ ସ୍ତରରେ କାରବାର କରିବାର ଶକ୍ତି ସେମାନଙ୍କର ଜନ୍ମିବ । ଏହିପରି ଗ୍ରାମଦାନକୁ ମୂଳକରି ଗାଁମାନଙ୍କରୁ ଏକ ଗଣତାନ୍ତ୍ରିକ ଆନ୍ଦୋଳନ ଆରମ୍ଭ ହେବ ତ ଦେଶସାରା ଗଣତନ୍ତ୍ର ବିସ୍ତାରିବ । ଆମ ଦେଶର ହାରାହାରି ଆୟ ବଢ଼ିଗଲା ବୋଲି ହିସାବ ଦେଖାଇଲେ ହେବ ନାହିଁ । ସମାଜର ପ୍ରତି କ୍ଷେତ୍ରରେ, ପ୍ରତି ବିଭାଗରେ, ଲୋକଙ୍କର ଅବସ୍ଥା ସୁଧୁରିବା ଋହି । ତାହା ହେଲେ ଯାଇ ଆର୍ଥିକ ଓ ସାମାଜିକ ଗଣତନ୍ତ୍ର ସ୍ଥାପିତ ହେବ ।

ଗଣତନ୍ତ୍ରକୁ ସଫଳ କରିବାକୁ ହେଲେ ଶାସନ କ୍ଷେତ୍ରରେ କ୍ଷମତାର ବିକେନ୍ଦ୍ରୀକରଣ ଦରକାର ଓ ଦଳଗତ ରାଜନୀତି ଲୋପ ହେବା ଋହି । ଅନ୍ୟ ଦେଶରେ ମଧ୍ୟ ଏଭଳି ସମସ୍ୟା ଉଠିଛି । ଫ୍ରାନ୍ସରେ ସେଥିପାଇଁ ଡିଗଲ୍ ତାହାଙ୍କୁ ସୁଧାରିବା ଚେଷ୍ଟା କରୁଛନ୍ତି । ପ୍ରଥମେ ଆମେ ବୁଝୁଥିଲୁ ଯେ, ସେ ଏକଚ୍ଛତ୍ରଶାସନ ଚଳାଇବେ, ମାତ୍ର ସେ ଦଳଗତ ରାଜନୀତିର ପଙ୍କରୁ ସେଠାର ରାଜନୀତିକୁ ଉଠାଇବାର ଚେଷ୍ଟା କରୁଥିବାର ଜଣାଯାଉଛି ।

ଆମଦେଶରେ ଉପସ୍ଥିତ ସଙ୍କଟ କାରଣ ଅଛି ବୋଲି କହିଲେ ତାହା ଆମର ଆତ୍ମବଡ଼ିମାକୁ ବାଧିବ, ମାତ୍ର ଅପ୍ରିୟ ସତ୍ୟଟାକୁ ସ୍ୱୀକାର କରିବାକୁ ହେବ । ଅନେକଙ୍କର ଧାରଣା ଯେ, ଥରେ ଗୋଟାଏ ଏକଚ୍ଛତ୍ର ଶାସନ ଚାଲୁ ହୋଇଗଲେ ଅନେକ ପୁରୁଣା ଆବର୍ଜନା—Augean Stables ସଫା ହୋଇଯିବ । ମାତ୍ର ଆମେ ସର୍ବୋଦୟବାଦୀ ଏପରି ଧାରଣାରେ ବିଶ୍ୱାସ କରୁନାହିଁ । ଆମର ବିଶ୍ୱାସ ଯେ ଦେଶରେ ଏକ ଶକ୍ତିଶାଳୀ ଗଣତାନ୍ତ୍ରିକ ଆନ୍ଦୋଳନ ତଳଆଡୁ ଆରମ୍ଭ ହେବା ଉଚିତ । ଆଜି ଯେଉଁ ଫର୍ମାଲ୍ ବା ଆକୃତିଗତ ଗଣତନ୍ତ୍ର ଚାଲିଛି ତାହା ଭିତର ଦେଇ ଜନସାଧାରଣଙ୍କର ସ୍ୱାର୍ଥ, ଇଚ୍ଛା ଓ ମତ ପ୍ରତିଫଳିତ ହେଉ ନାହିଁ । ଯେଉଁମାନେ ତାକୁ ଚଳାଉଛନ୍ତି ସେମାନେ ଯନ୍ତ୍ରାରୂଢ଼ାନି ମାୟୟା—ଯନ୍ତ୍ର କବଳରେ ପଡ଼ିଥିଲେ ମଧ୍ୟ କର୍ତ୍ତାହଂ ଇତି ମନ୍ୟତେ ।

ଏ ଅବସ୍ଥାକୁ ବଦଳାଇବାର ସାଧ୍ୟ ଶାସନ କ୍ଷେତ୍ରରେ ଥିବା ଉପରବାଲାଙ୍କର ନାହିଁ । ସେମାନଙ୍କର ସେଥିପାଇଁ ବେଳ ସୁଦ୍ଧା ନାହିଁ । ଆମ ପ୍ରଧାନମନ୍ତ୍ରୀ ଶାସନ ଦାୟିତ୍ୱରୁ ଯଦି ଛ’ମାସ ଛୁଟି ମାଗିଲେ ତ ସମସ୍ତେ ନା, ନା, କରି ଧାଇଁ ଆସିଲେ । ସେ ହୁଏତ ଏ ଦିଗରେ କିଛି ଭାବିଥିଲେ, କରିଥିଲେ ପାରିଥାନ୍ତେ. ମାତ୍ର ତାଙ୍କୁ ଛୁଟି ମିଳିଲା ନାହିଁ । ଏ ଏକ ଅତି ଦୁଃଖଦ ପରିଣତି—ଏକ ଟ୍ରାଜେଡ଼ି । ମୁଁ କୌଣସି ଆତଙ୍କ ସୃଷ୍ଟି କରିବାକୁ ଚାହେଁ ନାହିଁ । ଜଓ୍ୟାହାରଲାଲ ନେହରୁ ବଂଚିଥିଲାଯାଏ ତୁରନ୍ତ ବିପଦର ଆଶଙ୍କା ନାହିଁ । ମାତ୍ର ଆମେ ସାବଧାନ ହେବା ଉଚିତ ।

ଏ ସ୍ଥିତିରୁ ବାହାରିବାର ଗୋଟାଏ ଉପାୟ ସର୍ବୋଦୟ ବତାଉଛି । ସର୍ବୋଦୟ କହେ—ତଳଆଡ଼ୁ ସାନ ସାନ ଲୋକଙ୍କୁ ଧର । ଗାନ୍ଧିଜୀ ସ୍ୱରାଜ୍ୟ ପାଇଁ ଏୟା କରିଥିଲେ । ସବୁ ଦେଶରେ

ବଡ଼ ବଡ଼ ଆନ୍ଦୋଳନ, ବିପ୍ଳବ, ଏହିପରି ଅନାମଧେୟ ରାମା ଶାମା ଦାମାଙ୍କୁ ଧରି ହିଁ ହୋଇ ଆସିଛି । ଶାସକମାନଙ୍କ ମଧ୍ୟ ପୁଣି ଗଣତନ୍ତ୍ର ଫେରିବ ତ ସେଇ ତଳଆଡ଼ୁ ଉଠିବ । ରୁଷିଆରେ ମଧ୍ୟ ଆମେ ଦେଖିଲୁ ଯେ ଷ୍ଟାଲିନ୍ ତାଙ୍କର ସମସ୍ତ ଦମନ ସତ୍ତ୍ୱେ ସାଧାରଣ ଲୋକଙ୍କର ସ୍ପୃହାକୁ ମାରି ଦେଇ ପାରି ନ ଥିଲେ । ଲୋକଙ୍କଠାରେ ମୋର ବିଶ୍ୱାସ ଅଛି । ଲୋକଙ୍କୁ ଜାଗ୍ରତ କରିବା କାମ ତଳଆଡ଼ୁ ହେଉ । ଆମେ ଭଲ ରୂପେ ବୁଝି ରଖିବା ଉଚିତ ଯେ ଏ କାମ ସରକାରୀ ଆଶୀର୍ବାଦରେ ଚାଲି ପାରିବ ନାହିଁ ।

ମୁଁ କହୁ ନାହିଁ ଯେ ସରକାର ଦୁର୍ବଳ ହେଉ । ସରକାରର ବଳ ବଢ଼ୁ ଓ ସେମାନେ ଭୁଲ ମଧ୍ୟ କରନ୍ତୁ । ଭୁଲ କରିବାର ଅଧିକାର ହିଁ ସ୍ୱାଧୀନତା ବୋଲି ଗାନ୍ଧିଜୀ କହିଛନ୍ତି । ମାତ୍ର ସରକାର ଦ୍ୱାରା ଯାହା ନ ହେବ ତାହା ତାଙ୍କଠାରୁ ଆଶା କରିବା ନାହିଁ । ତଳଆଡ଼ୁ ଶକ୍ତି ଗଢ଼ି ଉଠିବା ଆବଶ୍ୟକ । ଲୋକେ ପାଞ୍ଚ ଦଶ ଜଣ-ଲେଖା ଏକତ୍ର ହୋଇ ସ୍ଥାନେ ସ୍ଥାନେ ମଣ୍ଡଳ ଗଢ଼ନ୍ତୁ ଓ ଏ ଢଙ୍ଗରେ ଚିନ୍ତା କରିବା ଆରମ୍ଭ କରନ୍ତୁ, ଅନ୍ୟାୟ ଅନୀତିର ପ୍ରତିକାର କରନ୍ତୁ ଓ କିଛି ନା କିଛି ସେବା କାମ ମଧ୍ୟ କରନ୍ତୁ । ଦଶ ପନ୍ଦର ଜଣରୁ ବେଶୀ ହେଲେ ପୁଣି ଗୋଟାଏ ଆଶଙ୍କା ଅଛି ଯେ ତାହା ଭିତରେ ଏକ 'ଦଳ ବେହେରା' ବାହାରିବେ ଓ ତାଙ୍କରି କଥା ଚାଲିବ । ତେଣୁ ଏ ସବୁ ମଣ୍ଡଳୀ ବା 'ସେଲ୍' ସାନ ସାନ ହେବା ଉଚିତ । ଏହିପରି ଏକ ଗଣତାନ୍ତ୍ରିକ ଆନ୍ଦୋଳନ ଚଳାଇବାର ଉଦ୍ୟମର ତଳଆଡ଼ୁ ଆରମ୍ଭ ହେଲେ ଯାଇ ସଙ୍କଟର ସମାଧାନ ହେବ ।

---

# ଆମର ବୈଦେଶିକ ନୀତି

ଦୁନିଆର ଅନ୍ୟ ସ୍ୱାଧୀନ ଦେଶମାନେ ତାଙ୍କର ବୈଦେଶିକ ନୀତି ଯେଉଁସବୁ ବିଚାରରେ ସ୍ଥିର କରନ୍ତି, ଆମ ଦେଶର ସ୍ୱାଧୀନତା ପୂର୍ବରୁ ଓ ପରେ ମଧ୍ୟ ଆମର ବୈଦେଶିକ ନୀତି ସେ ଅନୁସାରେ ସ୍ଥିର ନ ହେଉଥିବାରୁ ତାହା ଅଦ୍ଭୁତ ଲାଗେ । ଏ ଏକ ବିଚିତ୍ର କଥା ଯେ, ଭାରତ ସ୍ୱାଧୀନ ହେବା ପୂର୍ବରୁ ମଧ୍ୟ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଲାଗିଥିବା ନେତା ଓ କର୍ମୀମାନେ ଦେଶର ଆନ୍ତର୍ଜାତୀୟ ନୀତି ସ୍ଥିର କରୁଥିଲେ ଓ ସେହି ହେତୁ ଏ ବିଷୟରେ ମତପ୍ରକାଶ କରୁଥିଲେ । ଅନେକଙ୍କର ମନେଥିବ ଯେ, ଏବିସିନିଆ ଉପରେ ଆକ୍ରମଣ ହେଲାବେଳେ ଏ ଦେଶରେ ପ୍ରତିବାଦ ଦିବସ-ପାଳନ କରାଯାଇ ଥିଲା । ସେତେବେଳେ ଏପରି କୌଣସି ଆନ୍ତର୍ଜାତୀୟ ସମସ୍ୟା ନଥିଲା ଯାହା ବିଷୟରେ ଆମେ ପରାଧୀନ ଥାଇ ମଧ୍ୟ ମତ ଦେଉ ନ ଥିଲୁ । ଏଥିରେ ଆମର ଏକର ପ୍ରଧାନମନ୍ତ୍ରୀ ନେହରୁଜୀ ଅଗ୍ରଣୀ ଥିଲେ । ତାହାଙ୍କ ବ୍ୟତୀତ କଂଗ୍ରେସର ଅବଶିଷ୍ଟ ଅଧିକାଂଶ ଲୋକ କେବଳ ଦେଶକୁ ସ୍ୱାଧୀନ କରିବା କଥାହିଁ ବିଚାରୁଥିଲେ, ସେଥିପାଇଁ ବିଦେଶରୁ ମଧ୍ୟ କିପରି ସାହାଯ୍ୟ ମିଳି ପାରିବ ତାହା ମଧ୍ୟ କେତେକ ବିଚାରୁଥିଲେ । ସେଥିପାଇଁ ଦୁନିଆରେ କଏ କେଉଁଠି ନ୍ୟାୟ ଅନ୍ୟାୟ କଲେ ଆମେ କାହିଁକି ସେଥିରେ ପାଟି ଫିଟାଇବା ବୋଲି ସେମାନେ ବିଚାରୁଥିଲେ । ଅବଶ୍ୟ ମହାତ୍ମା ଗାନ୍ଧୀଙ୍କର ଭିନ୍ନେ ଧରଣର ମୌଳିକ ବିଚାର ଥିଲା, ତାଙ୍କ ନିକଟରେ ସ୍ୱାଧୀନତା ନୁହେଁ; ମାତ୍ର ଅହିଂସା ମୁଖ୍ୟ ଥିଲା । ଅହିଂସା ଦ୍ୱାରା ସେ ସ୍ୱରାଜ ହାସଲ କରିବା ଉଦ୍ୟମ

କରୁଥିଲେ, ମାତ୍ର ସ୍ୱରାଜ ପାଇଁ ସେ ଅହିଂସାକୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲେ । ତେଣୁ ତାଙ୍କର ଦୃଷ୍ଟି ଜାଗତିକ ଥିଲା, ସେ ଦୁନିଆରେ କାହାରିକୁ, ଏପରିକି ଇଂରେଜମାନଙ୍କୁ ସୁଦ୍ଧା ଶତ୍ରୁ ମନେ କରୁନଥିଲେ । ମାତ୍ର ଅନ୍ୟମାନେ ସେପରି ନଥିଲେ । ସାଧାରଣତଃ ଜବାହରଲାଲ ନେହରୁ ହିଁ କଂଗ୍ରେସରେ ଆନ୍ତର୍ଜାତୀୟ ପରିସ୍ଥିତି ବିଷୟରେ ପ୍ରସ୍ତାବ ଆଣୁଥିଲେ । କଂଗ୍ରେସରେ ତାଙ୍କର ବାପା ମୋତିଲାଲ, ଦେଶବନ୍ଧୁ, ଚିତ୍ତରଞ୍ଜନ ଆଦିଙ୍କ ପରି ଅନ୍ୟ ବୟୋଜ୍ୟେଷ୍ଠ ନେତା ଥାଇଁ ଥାଇଁ କେବଳ ତାଙ୍କର ଏକୁଟିଆ ଇଚ୍ଛାରେ ଏସବୁ ହେଉଥାନ୍ତା ତ ତାଙ୍କୁ ଏତେ ପ୍ରାଧାନ୍ୟ ମିଳି ନଥାନ୍ତା । ମାତ୍ର ତାଙ୍କ ପଛରେ ଗାନ୍ଧୀଜୀଙ୍କର ଆଶୀର୍ବାଦ ଥିଲା । ଗାନ୍ଧୀଜୀ ତାଙ୍କୁ ଆନ୍ତର୍ଜାତୀୟ ସମସ୍ୟା ବିଷୟରେ ଏକରକମ ଆମ ମୁଖପାତ୍ର କରିଥିଲେ । ସେତେବେଳେ ଏ କଥାର ସମାଲୋଚନା ମଧ୍ୟ ହେଉଥିଲା ଯେ, ଅନ୍ୟଦେଶ କିଏ କେଉଁଠି ଆକ୍ରମଣ କଲା, ତାର ନିନ୍ଦା ଆମେ କାହିଁକି କରିବୁ, ଆମେ ତ ନିଜେ ସ୍ୱାଧୀନ ହୋଇନୁ । ମାତ୍ର ଆମ ପକ୍ଷରେ ଏହା ଗର୍ବର ବିଷୟ ଯେ, ସ୍ୱାଧୀନତା ପୂର୍ବରୁ ମଧ୍ୟ ଭାରତର ଜନତାର ଯେ ଗୋଟାଏ ଆନ୍ତର୍ଜାତୀୟ ନୀତି ଅଛି ଏହା ଗୃହୀତ ହୋଇ ଯାଇଥିଲା ଓ ସେ ନୀତିରେ ମଧ୍ୟ କୌଣସି ସୁବିଧାବାଦୀ ଦୃଷ୍ଟି ନଥିଲା । ଜର୍ମାନୀ ବା ଜାପାନ ଆମକୁ ସାହାଯ୍ୟ କରିପାରେ; ତେଣୁ ଆମେ ତାର ସମାଲୋଚନା କରିବୁ ନାହିଁ ଏପରି ମନୋଭାବ ନଥିଲା । ଗାନ୍ଧୀଜୀ ଓ ନେହରୁଙ୍କ ଦ୍ୱାରା ସେତେବେଳେ ଏହିପରି ଭାବରେ ଦେଶର ସ୍ୱାଧୀନତା ପାଇଁ ଲଢ଼ୁଥିବା ଏକମାତ୍ର ଜାତୀୟ ଅନୁଷ୍ଠାନ କଂଗ୍ରେସ ଜରିଆରେ ଏକ ଆନ୍ତର୍ଜାତୀୟ ନୀତି ନିର୍ଣ୍ଣିତ ହୋଇଥିଲା । ଆଜିକାର ସ୍ୱାଧୀନ ଭାରତର ସରକାରୀ ବୈଦେଶିକ ନୀତିର ଭିତ୍ତି ସମ୍ଭବତଃ ଏହି ପୂର୍ବରୁ ଚାଲି ଆସୁଥିବା ନୀତି ସହିତ ରହିଛି ।

ଭାରତ ଯେତେବେଳେ ସ୍ୱାଧୀନ ହେଲା ସେତେବେଳେ ତାହା ସାଙ୍ଗେ ସାଙ୍ଗେ ଦୁଇଖଣ୍ଡ ମଧ୍ୟ ହେଲା ଓ ଗଡ଼ଜାତଗୁଡ଼ିକ ମଧ୍ୟ ସ୍ୱତନ୍ତ୍ର ହୋଇ ରହିଲେ ଏବଂ ଏହିରୂପେ ଦେଶରେ ଏକ ଅନିଶ୍ଚିତ ଅବସ୍ଥା ସୃଷ୍ଟି ହେଲା । ସେତେବେଳେ ଇଂରେଜଙ୍କୁ ସନ୍ଦେହ କରା ଯାଉଥିଲା ଯେ, ସେମାନେ ପାକିସ୍ତାନ ତଥା ହାଇଦ୍ରାବାଦଭଳି ଗଡ଼ଜାତମାନଙ୍କୁ ଘାଣ୍ଟିକରି ଏ ଦେଶରେ ନିଜର କୂଟନୀତି ଚଳାଇବେ । ତେଣୁ ସେତେବେଳେ ଦେଶରେ ବହୁତ ଇଂରେଜ-ବିରୋଧୀ ମନୋଭାବ ଦେଖା ଯାଇଥିଲା । ଇଂରେଜଙ୍କ ସହିତ ପୁଣି ଏକ ସଂଘର୍ଷ ଲାଗିବ ଓ ସେଥିପାଇଁ ଆମେ ସତର୍କ ରହିବା ଉଚିତ ବୋଲି ଅନେକ ଭାବୁଥିଲେ । ସେତେବେଳେ ଆମର ସମ୍ବିଧାନ କିପରି ହେବ ଏ ବିଷୟରେ ବିଶେଷ ମତଭେଦ ନଥିଲା, ମାତ୍ର ବ୍ରିଟିଶ ରାଜ୍ୟଗୋଷ୍ଠୀ ସହିତ ଆମର କଣ ସମ୍ବନ୍ଧ ରହିବ ସେ କଥା ନେଇ ଗୁରୁତର ମତଭେଦ ଦେଖା ଦେଇଥିଲା । ମାତ୍ର ପୂର୍ବରୁ ଯେଉଁ ନୀତି ସ୍ଥିର ହୋଇଥିଲା ଯେ, ଆମର ଦୁନିଆରେ କେହି ଶତ୍ରୁ ନାହାନ୍ତି ସେହି ଅନୁସାରେ ନେହରୁଙ୍କ ନେତୃତ୍ୱରେହିଁ ସ୍ଥିର ହେଲା ଯେ ଭାରତ ରାଜ୍ୟଗୋଷ୍ଠୀରେ ରହିବ । ଏହା ମଧ୍ୟ ଭାରତର ବୈଦେଶିକ ନୀତି ସମ୍ବନ୍ଧୀୟ ପ୍ରଶ୍ନହିଁ ଥିଲା ।

ଏହା ପରେ ଆସିଲା ଆନ୍ତର୍ଜାତୀୟ ପରିସ୍ଥିତିରେ ରୁଷ ଓ ଆମେରିକା ଭିତରେ ବିରୋଧ ଓ ପୃଥିବୀରେ ଦୁଇଟି ବିରୋଧୀ ଦଳର ସୃଷ୍ଟି । ଏତେବେଳେ ମଧ୍ୟ ପ୍ରଶ୍ନ ଉଠିଲା ଯେ ଏ କ୍ଷେତ୍ରରେ ଭାରତର ନୀତି କଣ ହେବ । ସେତେବେଳେ ଏ କଥା ନେଇ ପ୍ରବଳ ଆନ୍ଦୋଳନ ଚାଲିଲା । କମ୍ୟୁନିଷ୍ଟ ତଥା ସେମାନଙ୍କ ଢଙ୍ଗରେ ଭାବୁଥିବା ଲୋକେ ଯୁକ୍ତି କଲେ ଯେ, ଭାରତର ପରିସ୍ଥିତି ଦୃଷ୍ଟିରୁ ତାହା ରୁଷ ଓ ଚୀନର ଗୋଷ୍ଠୀରେ ଯୋଗଦେବା

ଉଚିତ । ଅନ୍ୟପକ୍ଷରୁ ମଧ୍ୟ ପ୍ରବଳ ଯୁକ୍ତି ହେଲା ଯେ, ଭାରତ ଗଣତନ୍ତ୍ର ନୀତି ଗ୍ରହଣ କରିଛି, ତେଣୁ ତାହା ଇଂରେଜ—ଆମେରିକାର ଗୋଷ୍ଠୀରେ ଯୋଗଦେବା ଯୁକ୍ତ । କଂଗ୍ରେସ ଭିତରେ ମଧ୍ୟ ଏହା ସପକ୍ଷରେ ପ୍ରବଳ ମତ ଥିଲା ଯେ, ଏହା ହେଲେ ଭାରତର ଉନ୍ନୟନ ପାଇଁ ଆମେରିକାରୁ ସାହାଯ୍ୟ ମିଳି ପାରିବ । ସର୍ଦ୍ଦାର ପଟେଲଙ୍କ ଭଳି ବଡ଼ ବଡ଼ ନେତା ମଧ୍ୟ ଏହା ସପକ୍ଷରେ ଥିଲେ । ସେ ନେହରୁଙ୍କ ନୀତିକୁ ପସନ୍ଦ କରୁ ନଥିଲେ । ଏହା ନିରାପଦ ନୁହେଁ ଓ ଭାରତର ସ୍ୱାଧୀନତା ଦୃଷ୍ଟିରୁ ଅନୁଚିତ ବୋଲି ସେ ଭାବୁଥିଲେ । ସେତେବେଳେ ଆମେରିକା ପକ୍ଷରୁ ଭାରତକୁ ସାହାଯ୍ୟ ମିଳିବ ବୋଲି ମଧ୍ୟ ଆଶା ଥିଲା; ମାତ୍ର ତାହା ସହିତ ଏକ ଡୋର ମଧ୍ୟ ବନ୍ଧା ହୋଇଛି ବୋଲି ଜଣା ପଡ଼ିଲା । ଅର୍ଥାତ୍ ସାହାଯ୍ୟ ବିନିମୟରେ ଭାରତ ଆମେରିକାକୁ ସମର୍ଥନ କରିବ ଏହି ସର୍ତ୍ତ ଥିଲା । ତେଣୁ ଭାରତ ପକ୍ଷରୁ ସ୍ଥିର ହେଲା ଯେ, ଦେଶରେ ଦୁର୍ଭିକ୍ଷ ପଡ଼ିଲେ, ଲୋକେ ମରିଗଲେ ବି ଆମେ କୌଣସି ପକ୍ଷରେ ଯୋଗଦେବୁ ନାହିଁ, ଏପରି ଡୋରିରେ ଗୁନ୍ଥା ସାହାଯ୍ୟ ନେବୁନାହିଁ, ଥୋପ ଗିଳିବୁ ନାହିଁ । ସେତେବେଳେ ମଧ୍ୟ ଦେଶରେ ଖୁବ ପାଟି ତୁଣ୍ଡ ହେଲା ଯେ ନେହରୁ ସବୁ ହାରିଦେଲେ ।

ମାତ୍ର ଯଦି ଆମେ ନେହରୁଙ୍କର ଜୀବନୀ ଆଲୋଚନା କରିବା ଓ ଦେଖି ବସିବା ଯେ କେଉଁ କଥାରେ ତାଙ୍କର ପ୍ରତିଭା ପ୍ରସ୍ଫୁଟିତ ହୋଇଛି, କେଉଁ ବିଷୟରେ ସେ ଏକାଗ୍ର ଭାବରେ ସାଧନା କଲା ପରି କରିଛନ୍ତି ତେବେ ଦେଖିବା ଯେ, ତାହା ହେଉଛି ତାଙ୍କର ଏହି ବୈଦେଶିକ ନୀତି । ପଚାଶ ବର୍ଷ ପରେ ଇତିହାସ ଲେଖାଗଲେ ଦେଖାଯିବ ଯେ, ଏହାହିଁ ତାଙ୍କ ଜୀବନର ଶ୍ରେଷ୍ଠ ଅବଦାନ । ସେତେବେଳେ ଅନ୍ୟମାନେ ତାଙ୍କୁ ଏ ବିଷୟରେ ପରିହାସ

କରୁଥିଲେ । କଂଗ୍ରେସ କାର୍ଯ୍ୟକାରୀ ସମିତି, ନିଖିଳ ଭାରତ ସମିତିରେ ଏହା ଏକ ପରିହାସର ବିଷୟ ଥିଲା ଯେ, ହେଲେ ନେହରୁ ଆସିଲେ, ଏଥର ବୈଦେଶିକ ନୀତି କଥା ପଡ଼ିବ ।

ଏସବୁ କଥା କହିବାର ସନ୍ଦର୍ଭ ହେଉଛି ଯେ, ଏବେ ଏ ଦେଶରେ ସେହିପରି ଚୀନ କଥା ନେଇ ଘାଣ୍ଟିଘୁଣ୍ଟ ହେଉଛି । ଚୀନ ସମ୍ବନ୍ଧୀୟ ସୀମାନ୍ତବାଦ ସମସ୍ୟା ନେଇ କଣ୍ଣ କରାଯିବ ସେ ବିଷୟରେ ମତ ଭେଦ ହେଲେ ସନ୍ଦେହ ନାହିଁ । ସରକାରୀ ଧଳାକାଗଜ ପଢ଼ନ୍ତୁ, ସେଥିରେ ସବୁ କଥା ସ୍ପଷ୍ଟ ଭାବରେ ରହିଛି ଦେଖି ପାରିବେ । ଆଜି ପ୍ରକୃତ ସମସ୍ୟା ହେଉଛି ଯେ, ଚୀନ ଆକ୍ରମଣ ଯୋଗୁଁ ଦେଶ ସଙ୍କଟାପନ୍ନ ନୁହେଁ, ମାତ୍ର ଯେଉଁ ଆନ୍ତର୍ଜାତୀୟ ନୀତିକୁ ଗଢ଼ିବାପାଇଁ ଗୋଟାଏ ମହାପୁରୁଷର ଜୀବନ କଟିଗଲା, ଗାନ୍ଧୀ ଓ ଜବାହରଲାଲଙ୍କର ଗଢ଼ା ସେ ନୀତି ଆଜି ସଙ୍କଟାପନ୍ନ ହୋଇଛି । ଚୀନ ଭାରତକୁ ଆକ୍ରମଣ କରି ଏହି ଆତଙ୍କ ଖେଳେଇ ତାହାରି ଆଳରେ ପ୍ରତିକ୍ରିୟାଶୀଳ ଶକ୍ତିମାନେ ଆଜି ମୁଣ୍ଡ ଟେକିବା ଚେଷ୍ଟା କରୁଛନ୍ତି ।

ଆଜିର ଖବର କାଗଜରେ ଏକ ଆମେରିକାନ ସାମ୍ବାଦିକଙ୍କର ମନ୍ତବ୍ୟ ବାହାରିଛି, ଆପଣମାନେ ଦେଖିଥିବେ । ସେ ସାମ୍ବାଦିକ ନେହରୁଙ୍କୁ ପଚାରିଥିଲେ ଯେ, ଭାରତର ଯୁବକଗୋଷ୍ଠୀ ତାଙ୍କ ଯୁଗରେ ଯେପରି ଆଦର୍ଶବାଦୀ ଓ କର୍ମତତ୍ପର ଥିଲା ଆଜି କାହିଁକି ସେପରି ନାହିଁ ? ନେହରୁ କୁଆଡ଼େ ତାର ଜବାବ ଦେଇ-ପାରିଲେ ନାହିଁ ଓ ଉକ୍ତ ସାମ୍ବାଦିକ ମତପ୍ରକାଶ କରିଛନ୍ତି ଯେ ଏହାର କାରଣ ହେଉଛି, ସେତେବେଳେ ଭାରତର ଏକ ଶତ୍ରୁ ଇଂରେଜ ଥିଲା ଓ ଏକ ସ୍ୱରାଜ ହାସଲ କରିବାର ଲକ୍ଷ୍ୟ ମଧ୍ୟ ସାମନାରେ ଥିଲା । ମାତ୍ର ଏବେ ତ ସେ ଇଂରେଜ ଆଉ ଶତ୍ରୁ

ନାହାନ୍ତି ଓ ଭାରତରେ ଯେ ପ୍ରକୃତ ଶତ୍ରୁ କମ୍ୟୁନିଷ୍ଟ ଚୀନ, ତାକୁ ଶତ୍ରୁ ରୂପେ ସ୍ୱୀକାର କରିବାକୁ ନେହରୁ ରାଜି ନୁହନ୍ତି । ଆହା, କେତେ ସରଳ ଓ ସୂକ୍ଷ୍ମ ବିଶ୍ଳେଷଣ ଏ 'ମହାପୁରୁଷ' କରିଦେଲେ ! ଭାରତକୁ ଆମେରିକା ଆଡ଼କୁ ଢଳେଇବାକୁ ଏହିପରି କୌଶଳରେ ପ୍ରଚେଷ୍ଟା ଚାଲିଛି । ଏହି ବିପଦ ପ୍ରତି ସାବଧାନ କରିବା ପାଇଁ ମୁଁ ଆଜି ଏଠି ଠିଆ ହୋଇଛି ।

ଭାରତର ଅତି ନମ୍ରତାର ସହିତ ବିଶ୍ୱଶାନ୍ତି ଦିଗରେ କିଛି ଅବଦାନ ରହିଛି । ଯେତେବେଳେ ଦୁନିଆରେ ଦୁଇ ମହାଶକ୍ତି ପରସ୍ପର ବିରୁଦ୍ଧରେ ଠିଆହୋଇ ଗାଳିଗୁଲଜ ପ୍ରବାହରେ ଭାସି ପରସ୍ପରକୁ ଗାଳିଦେବା ଛଡ଼ା କଥା କହୁ ନଥିଲେ । ସେତେବେଳେ ନେହରୁ ତାଙ୍କର ସ୍ୱତନ୍ତ୍ର ନିରପେକ୍ଷ ବୈଦେଶିକ ନୀତି ଛିଡ଼ା କଲେ ଓ ଉଭୟପକ୍ଷରୁ ତାଙ୍କ ଉପରେ ଗାଳି ଓ ଉପହାସ ଚାଲିଲା । ସେଦେଶର ଖବର କାଗଜମାନଙ୍କରେ ବ୍ୟଙ୍ଗଚିତ୍ରମାନ ବାହାରିଲା । ଭାରତ ଭିତରେ ଭିତରେ ଅନ୍ୟପକ୍ଷରେ ରହିଛି ବୋଲି ଉଭୟ ପକ୍ଷରୁ ଦୋଷାରୋପ ଚାଲିଲା । ମାତ୍ର ନେହରୁ ନିଜ ନୀତିରେ ଦୃଢ଼ ରହିଲେ ଓ କୌଣସି ସର୍ତ୍ତରେ ବିଦେଶୀ ସାହାଯ୍ୟ ନେବୁ ନାହିଁ ବୋଲି ଦୃଢ଼ଭାବରେ କହିଲେ । ମାତ୍ର ଦୁଇ ବର୍ଷ ଭିତରେ ଅବସ୍ଥା ଏପରି ହେଲା ଯେ, ଉଭୟପକ୍ଷ ଭାରତର ନିରପେକ୍ଷ ନୀତିର ମହତ୍ତ୍ୱ ବୁଝିଲେ ଓ ଭାରତକୁ ସାହାଯ୍ୟ ମଧ୍ୟ କଲେ ।

କୋରିଆ ଯୁଦ୍ଧରେ ଯେତେବେଳେ ଅଚଳ ଅବସ୍ଥା ସୃଷ୍ଟି ହେଲା, କୌଣସି ପକ୍ଷ ଆଉ ଜିତିବାର ବା ଆଗେଇବାର ସମ୍ଭାବନା ରହିଲା ନାହିଁ, ସେତେବେଳେ ଉଭୟପକ୍ଷ ଅନୁଭବ କଲେ ଯେ, କେହି ଜଣେ ଆସି ମଝିରେ ପଡ଼ି ରଫାଲେଖା କରିବା ଦରକାର । ସେତେବେଳେ ଭାରତର ମଧ୍ୟସ୍ଥତାରେ ଯୁଦ୍ଧବନ୍ଦ ହେଲା ଓ ଆମର

ସ୍ୱାଧୀନ ବୈଦେଶିକ ନୀତିର ମହତ୍ତ୍ୱ ସେମାନେ ବୁଝିଲେ । ଇଣ୍ଡୋଚୀନରେ ମଧ୍ୟ ଭାରତର ମଧ୍ୟସ୍ଥତା କାମ ଦେଖାଇଲା । ଯେଉଁ ଭାରତ ଦିନେ ନିଜ ଏ ନିରପେକ୍ଷ ନୀତିରେ ଏକୁଟିଆ ଥିଲା ତାହା ପକ୍ଷରେ ପୃଥିବୀର ଅନ୍ୟ କେତେକ ରାଷ୍ଟ୍ର ମଧ୍ୟ ଯୋଗ ଦେଲେ ।

ଏହାଛଡ଼ା ବିଶ୍ୱରାଷ୍ଟ୍ର ସଂଘରେ ଚୀନର ସଦସ୍ୟତା କଥା ମଧ୍ୟ ଭାରତ ବରାବର ଉଠାଇଲା । ଏତେ ବଡ଼ ଚୀନ ଦେଶ ସେଥିରେ ପ୍ରତିନିଧିତ୍ୱ ପାଇବ ନାହିଁ ଓ ଫରମୋଜାରେ ବସିଥିବା ମୁଷ୍ଟିମେୟ ଲୋକ ଯେ କି କେବଳ ଆମେରିକା ପକ୍ଷର ମତରେ ଲାଞ୍ଚ ନିଛନ୍ତି ଆଉ ଦୁର୍ନୀତିର ଶେଷ ସୀମାକୁ ଯାଇଛନ୍ତି, ସେହି ଲୋକ ଚୀନ ପକ୍ଷରୁ ପ୍ରତିନିଧିତ୍ୱ କରିବେ, ଏଇଟା କିପରି ଚଳିବ ? ଏବେ ବି ଯେତେବେଳେ ଏଣେ ଚୀନ ଆକ୍ରମଣ ଦୁଆ ଉଠିଛି ସେତିକି ବେଳେ ବି ତେଣେ ରାଷ୍ଟ୍ରସଂଘରେ ଆମର ପ୍ରତିନିଧି ଚୀନର ସଦସ୍ୟତା କଥା ଉଠାଇଛନ୍ତି । ଏହିରୂପେ ଭାରତର ନିରପେକ୍ଷ ଆଚରଣ ଦ୍ୱାରା ତାହା ପ୍ରତି ରୁଷ୍ ଚୀନର ମନୋଭାବ ମଧ୍ୟ ବଦଳିଗଲା ।

ବିଶେଷ କରି ମହାଶକ୍ତିମାନେ ଯେଉଁ Brink of war policy ଧରିଲେ ଯେ ଠାଣି ଠାଣି ଲଢ଼ୁଆ କଥା କହି ଯୁଦ୍ଧର ଠିକ୍ ଧାରଯାଏ ଯିବେ । ମାତ୍ର ଯୁଦ୍ଧ ଭିତରକୁ ଡେଇଁବେ ନାହିଁ । ସେଥିରେ ସେମାନେ ବୁଝିଲେ ଯେ, ମଝିରେ ହାଁ ହାଁ କରି ବାଧା ଦେବାକୁ ବି କେହି ଥିବା ଦରକାର । ତାହା ହେଲେ ସେମାନେ

କହିପାରିବେ ଯେ, ଆମକୁ ଏମାନେ ଅଟକାଇ ଦେଲେ ନହେଲେ ଆମେ ବେଶୀ ନେଇଆନ୍ତୁ । ଭାରତ ଏଇ ହଁ। ହଁ। କରିବା ମଧ୍ୟସ୍ଥ ହେଲା । ଫଳେ ଏ ନିରପେକ୍ଷ ମାଣ୍ଡ ଫଳରେ ଉଭୟ ପକ୍ଷରୁ ହିଁ ଆମକୁ ସାହାଯ୍ୟ ମିଳିଲା । ଶାନ୍ତିବାଦୀ ନିରପେକ୍ଷ ନୀତିର ସୂକ୍ଷ୍ମ ଅର୍ଥ ତ ଲୋକେ ବୁଝି ନଥିଲେ । ମାତ୍ର ଏହା ଯେତେବେଳେ ଲାଭ ହିଁ ଦେଖେଇଲା ସେତେବେଳେ ସେମାନେ ଖୁସି ହେଲେ । କାଶ୍ମୀର ସମସ୍ୟା ତଥା ଅନ୍ୟକଥା ନେଇ ଆମର ପାକିସ୍ଥାନ ସହିତ ତ କଳି ଲାଗିଥିଲା, ଇତିମଧ୍ୟରେ ତାହାର ଆମେରିକା ସହିତ ସାମରିକ ମେଣ୍ଟ ହୋଇଗଲା । ସେତିକିବେଳେ କ୍ରୁଷ୍ଚେଭ ଓ ବୁଲ୍‌ଗାନିନ୍ ଏ ଦେଶକୁ ବୁଲି ଆସିଥାନ୍ତି ଏବଂ "ମା ଠାରୁ ମାଉସୀର ଶ୍ରଦ୍ଧା ବେଶୀ" ଏହି ନୀତିରେ କ୍ରୁଷ୍ଚେଭ କହିଦେଲେ ଯେ କାଶ୍ମୀର ପୁରାପୁରି ଭାରତର । ସେତିକିବେଳେ ପୁଣି ଦେଶରେ ପ୍ରବଳ ହଲା ଆରମ୍ଭ ହେଲା ଓ ଯେଉଁମାନେ ଏଯାଏଁ ରୁଷ୍ ଓ ଚୀନ୍‌କୁ ଶତ୍ରୁ ବୋଲି କହୁଥିଲେ, ଦେଶର ସେହି ଲୋକେ ପୁଣି କହିଲେ ଯେ ଭୂତପୂର୍ବ ରୁଷିଆ ସହିତ ସାମରିକ ମେଣ୍ଟ କରାଯାଉ । ତାହାହେଲେ ପାକିସ୍ଥାନକୁ ଆମେ ଦେଖି ନେବା ।

ଏହିରୂପେ ବେଳକୁ ବେଳ ବଦଳୁଥିବା ଇଚ୍ଛାସବୁ ଯଦି ଜନମତ ବୋଲାଯିବ ତେବେ କି ଭୟଙ୍କର ଅବସ୍ଥା ହେବ ବିଚାର କରନ୍ତୁ । ଯଦି ଦେଶର ନେତା ଓ ଶାସକଙ୍କର ଏ ସାମୟିକ ଜୁଆର ନିରୋଧ କରିବାର ଶକ୍ତି ବା ସାହସ ନଥିବ, ତେବେ ସେ ନିଜ ଦୃଢ଼ ନୀତିରୁ ହଟିଯିବେ ଓ ଏହାପରି ହେବା ଯୋଗୁଁ ୟୁରୋପର ଇତିହାସରେ ଘୋର ବିପର୍ଯ୍ୟୟ ଘଟିଛି ଓ ଦୁଇ ଦୁଇଟା ମହାଯୁଦ୍ଧରେ ସେ ମହାଦେଶ ଛାରଖାର ହୋଇଛି ।

ପରିଶ୍ରମ କରନ୍ତୁ । ଦେଶର ଶାସନ ବ୍ୟବସ୍ଥାକୁ ସଜାଡ଼ି ନିଅନ୍ତୁ । ପୁଣି ଆଜି ସେ କହୁଛନ୍ତି ଯେ, ଅଠର ବର୍ଷରୁ ଊର୍ଦ୍ଧ୍ୱ ବୟସର ଯୁବକମାନେ ସାମରିକ ତାଲିମ ନେଇ ତୈୟାରି ରହନ୍ତୁ । ସେ ବାଧ୍ୟତାମୂଳକ ସାମରିକ ଶିକ୍ଷାର ପକ୍ଷପାତୀ ନୁହନ୍ତି, ମାତ୍ର ଯୁବକମାନେ ସ୍ୱେଚ୍ଛାରେ ଏଥିପାଇଁ ଆଗେଇ ଆସିବେ ବୋଲି ସେ ଆଶା ପ୍ରକାଶ କରିଛନ୍ତି ।

ମୁଁ ଭାବୁଛି ଯେ ଯଦି ଏ ମହାତ୍ମା ଗାନ୍ଧୀଙ୍କ ଦେଶରେ ବାଧ୍ୟତାମୂଳକ ସାମରିକ ଶିକ୍ଷା ଚାଲିବ ତେବେ ତାହା ଏକ ବଡ଼ ମର୍ମନ୍ତୁଦ ଘଟଣା ହେବ ଓ ଆତ୍ମହତ୍ୟାର ସାମିଲ ହେବ । ଆଜି ମୋର ମନେ ହେଲା କଣ ମୋର ସ୍ମୃତି ଭୁଲ ହୋଇ ଯାଉଛି ? ମାତ୍ର ମୁଁ କାଗଜପତ୍ର ପଢ଼ି ଦେଖିଲି ଯେ ମୋର ସ୍ମୃତି ଠିକ ଅଛି । ଆମେ ମୂଳରୁ ବରାବର ଅହିଂସା ଓ ବିଶ୍ୱଶାନ୍ତି କଥା କହି ଆସିଛୁ । ଏବେ ଯଦି ଏ ଚୀନ ସୀମା ବିବାଦ ସଂକ୍ରାନ୍ତ ସରକାରୀ 'ଧଳା କାଗଜ' ପଢ଼ିବେ ତେବେ ମଧ୍ୟ ଦେଖିବେ ଯେ ୧୯୫୪ରୁ ସ୍ଥାନ ସ୍ଥାନ ଘଟଣା ନେଇ ଉଭୟ ପକ୍ଷରୁ ବାଦାନୁବାଦ ଚାଲିଛି ମାତ୍ର ଉଭୟପକ୍ଷ ଏ ବିଷୟରେ ଦୃଢ଼ମତ ପ୍ରକାଶ କରିଛନ୍ତି ଯେ, କଦାପି ଯୁଦ୍ଧ କରାଯିବ ନାହିଁ । ନେହରୁ ତ ଦୂରର କଥା, ଏବେ କ୍ରୁଶ୍‌ଚେଭଙ୍କର ଭାଷା ସୁଦ୍ଧା ବଦଳିଗଲାଣି । କ୍ରୁଶ୍‌ଚେଭଙ୍କୁ ଆମେରିକାକୁ ନିମନ୍ତ୍ରଣ କରିବା ଯୋଗୁଁ ସେଠି ଆଇଜେନ୍‌ହାୱାରଙ୍କର ଘୋର ସମାଲୋଚନା ହେଲା । କେତେକ କହୁଛନ୍ତି ଯେ, ବୈଦେଶିକ ନୀତିର ଆଲୋଚନା ବାହାରେ ବାଟରେ ନୁହେଁ, ଗୋପନରେ ହେବା ଉଚିତ । ଗୋଟାଏ ଯୁଗରେ ତାହା ସେପରି ଗୋପନୀୟ ବିଷୟ ଥିଲା । ମାତ୍ର ଏବେ ଯୁଗ ବଦଳିଗଲାଣି ଓ କେବଳ ଆମ ଦେଶରେ ନୁହେଁ, ଆମେରିକାରେ ମଧ୍ୟ ବାହାରେ

ଘାଟରେ ବୈଦେଶିକ ମାନ୍ତର ଚର୍ଚ୍ଚା ହେଉଛନ୍ତି । ଆମେରିକାରେ ଏହାପରି ସବୁଜ ସମାଲୋଚନା ହେଲା ଯେ ଆଇକ୍ ସବୁ ସାଉଦେଲେ । ଖ୍ରୁଶ୍ଚେଭ ଯିନା ନିଜେ ଚାଲିପଡ଼ି ଆସିଥାନ୍ତା, ଆମର ବୈଭବ ଦେଖି ଯାଇଥାନ୍ତା । ତାଙ୍କୁ ଆଦରରେ ନିମନ୍ତ୍ରଣ କରି ଆଣି ଆଇକ୍ ତାର ମହତ୍ତ୍ୱ ବଢ଼େଇ ଦେଲେ ଓ ନିଜର ମଧ୍ୟ ଭବିଷ୍ୟତ ନଷ୍ଟ କରି ଦେଲେ । ଏହାଦ୍ୱାରା ଆମେରିକା ଯୁକ୍ତରାଷ୍ଟ୍ରର ମାନ ଓ ବଳ କମିଯିବ, ରିପବ୍ଲିକାନ୍ ଦଳର ପ୍ରଭାବ ନଷ୍ଟ ହୋଇଯିବ ଓ ଆଇଜେନ ହାଓ୍ୱାର ମଧ୍ୟ ନିଜେ ଲୋକପ୍ରିୟତା ହରାଇବେ । ମାତ୍ର ଏହାର ଜବାବରେ ଆଇକ୍ କଣ କହିଲେ ? ସେ କହିଲେ—"ମୋ ଆଗରେ ମୋ ଦେଶର, ମୋର ଦଳର ବା ମୋ ନିଜର ଭବିଷ୍ୟତ ପ୍ରଶ୍ନ ନାହିଁ । ମୋ ଆଗରେ ଏଇ ପ୍ରଶ୍ନ ନଗ୍ନ ରୂପରେ ଛିଡ଼ା ହୋଇଛି ଯେ, ମାନବଜାତି ରହିବ ନା ଧ୍ୱଂସ ହେବ ?" ଖ୍ରୁଶ୍ଚେଭ ଆମେରିକାରେ ପହଞ୍ଚିଲାବେଳକୁ ତେଣେ ଚନ୍ଦ୍ରରେ ତାଙ୍କର ରକେଟ ପହଞ୍ଚି ସାରିଥିଲା । ମାତ୍ର ସେ ଆମେରିକାରେ ଆସି ଏ କଥା କହିଲେ ନାହିଁ ଯେ ହୋଇ ଦେଖ ଆମେ ଚନ୍ଦ୍ରରେ ପହଞ୍ଚିଗଲୁଣି, ତା ଉପରେ ଆମର ଦଖଲ ହୋଇଗଲାଣି । ଆମେ ଏଥର ଚଉଦ ଭୁବନ ଜିତିବୁଁ । ସେ ଉଲଟା ଯେଉଁ ପ୍ରସ୍ତାବ ଦେଲେ ତାହା ଶୁଣି ସାରା ଦୁନିଆ ଆଚମ୍ବିତ ହେଲା । ସେ କହିଲେ—ଚାରି ବର୍ଷରେ ସାରା ପୃଥିବୀରେ ସମ୍ପୂର୍ଣ୍ଣ ନିରସ୍ତ୍ରୀକରଣ କରିବାକୁ ହେବ । ସାମରିକ ଶିକ୍ଷା ଆଦି ସବୁ ବନ୍ଦ କରିଦେବାକୁ ହେବ । ସାଧାରଣ ସୈନ୍ୟ ସୁଦ୍ଧା ରହିବେ ନାହିଁ । ଇତ୍ୟାଦି । ମୋର ତ ଆଶଙ୍କା ହେଲା ଯେ ଆମେରିକା ଲୋକେ ଏହାକୁ ଏକ ପ୍ରକାର ଧୂଆଁବାଣ ବୋଲି ଉଡ଼େଇ ଦେବେ । ସାରାଦେଶରୁ ଏକ ଅବିଶ୍ୱାସର ଅଟ୍ଟହାସ୍ୟ ଉଠିବ । ମାତ୍ର

ସେପରି ହେଲା ନାହିଁ । ଆଇଜେନ୍ ହାଓ୍ୱାର୍, ହର୍ଟର୍ ପ୍ରଭୃତି ଏହାକୁ ଗୁରୁତର ଭାବରେ ନେଲେ । ଏଥିଭିତରୁ ଉଠୁଥିବା ସନ୍ଦେହ ଓ ସମସ୍ୟା ନେଇ ବିଚାର ଚାଲିଛି ଓ କଥା ଅନେକ ଦୂର ଆଗେଇଲାଣି । ଆଜି କାଗଜରେ ଦେଖିଲି ଯେ, ଦୁଇ ଦେଶ ମଧ୍ୟରେ ଏକ ଦୁଇବର୍ଷିଆ ଚୁକ୍ତି କେତେକ ବିଷୟ ନେଇ ହେଉଛି ।

ମାତ୍ର ଏ ଦେଶରେ ଏବେ ବି ଜାତିଆଣ ଭାବରେ ରସିଥିବା ଏପରି ଲୋକ ଅଛନ୍ତି ଯିଏ ଭୟ କରନ୍ତି ଯେ, ଏ ଦୁହେଁ ମିଶିଯାଇଁ ସାରା ପୃଥିବୀକୁ ଜବତ କରି ଭାଗିବେ । ଏପରି କ୍ଷୁଦ୍ର ମନ, ସଂଶୟାତ୍ମାଙ୍କ ବିନାଶ ଲଭନ୍ତି ।

ମୁଁ ଯଦି ଆଜି ନିକିତା ଅନ୍ୟ ଢଙ୍ଗରେ ଏ ବିଷୟ କହୁଥାନ୍ତି ତେବେ ଜଣେ ସର୍ବୋଦୟବାଦୀ ଓ ଶାନ୍ତିବାଦୀ ହିସାବରେ ଅନ୍ୟ କଥା କହୁଥାନ୍ତି । ମୁଁ ସେପରି ଘରେ ବସି କାଗଜ ଦସ୍ତଖତ କରାଇବା ଶାନ୍ତିବାଦୀ ନୁହେଁ । ଦୁଇଟି ଶକ୍ତିଗୋଷ୍ଠୀ ପକ୍ଷରୁ ନିଜ ନିଜକୁ ଶାନ୍ତିକାମୀ ବୋଲି ଜାହିର କରିବା ପାଇଁ ଯେଉଁସବୁ ପ୍ରଚାରମୂଳକ ଶାନ୍ତି ଆନ୍ଦୋଳନ ଚାଲିଛି, ଯେଉଁଥିରେ 'ଆମ ଶାନ୍ତି ଅସଲ ଶାନ୍ତି, ତାଙ୍କ ଶାନ୍ତି ନକଲି' ବୋଲି ପ୍ରଚାର କରାଯାଏ, ମୁଁ ସେଥିରେ ମଧ୍ୟ ନାହିଁ । ଶାନ୍ତିପାଇଁ ଜୀବନ ଦେବାକୁ ତିଆରି ଥିବା-ଲୋକ ଏ ଦୁନିଆରେ ଅଛନ୍ତି । ୟୁରୋପ, ଆମେରିକାରେ ଏଭଳି ଶାନ୍ତିକାମୀ ବାହାରିଛନ୍ତି ଯେ, ଯୁଦ୍ଧ ନ କରିବା ଯୋଗୁଁ ବର୍ଷ ବର୍ଷ ଜେଲ ଭୋଗିଛନ୍ତି ।

ଏଠି ଏ ମହାତ୍ମା ଗାନ୍ଧୀଙ୍କ ଦେଶରେ ମଧ୍ୟ ସେଭଳି ବହୁଲୋକ ଶାନ୍ତିବାଦୀ ରୂପେ ବାହାରିବା ଉଚିତ । ଅନ୍ୟଥା ନ ହେଉଥିଲେ

ମୁଁ ସେହି କଥା କହୁଥାନ୍ତି । ଭାରତର ବୈଦେଶିକ ନୀତି ଅହିଂସା ଉପରେ ପ୍ରତିଷ୍ଠିତ ହେଲେ ମଧ୍ୟ ସେଥିରେ ଏଇ ତ୍ରୁଟି ରହିଛି ଯେ ପୂର୍ଣ୍ଣ ନିରସ୍ତ୍ରୀକରଣ ଯାଏ ଯିବାର ସାହସ କରାଯାଉ ନାହିଁ, ତାହା କରିବା ଉଚିତ ବୋଲି କହୁଥାନ୍ତି । ଆମେ କଦାପି ଯୁଦ୍ଧ କରିବୁ ନାହିଁ ବୋଲି କହୁଥାନ୍ତି । ମାତ୍ର ଆଜି ମୁଁ ତାହା କହୁନାହିଁ । ଆଜି ଆମର ବୈଦେଶିକ ନୀତି ମୂଳରେ ଥିବା ମୌଳିକ ସିଦ୍ଧାନ୍ତ ଉପରେ ଆକ୍ରମଣ ଚାଲିଥିବାରୁ ସେହି ବିଷୟରେ ସତର୍କବାଣୀ ଶୁଣାଇବାକୁ ମୁଁ ଛିଡ଼ା ହୋଇଛି । ଆମେ ଏ ସମସ୍ୟା ନେଇ ଯୁଦ୍ଧ କରିବୁ ନାହିଁ ବୋଲି ନେହରୁ ପଚିଶଥର କରି କହିଲେଣି ଓ ଆମେ ଜାଣି ରଖିବା ଉଚିତ ଯେ, ଚୀନ ସୀମାରେ ଯେଉଁ ଘଟଣା ଘଟୁଛି ତାହା ଯୁଦ୍ଧ ନୁହେଁ । ଯୁଦ୍ଧରେ ତ ସର୍ବସ୍ୱ ଆକ୍ରମଣ ଆରମ୍ଭ ହୋଇଯାଏ । ଯେ ଯେଉଁଠି ପାରିଲା ମାଡ଼ିଯାଏ । ଏଠି ତ ସୀମା ବିଷୟରେ ସାଧାରଣ ଝଗଡ଼ା ଚାଲିଛି । ଏହା ୧୯୫୪ରୁ ସାନ ସାନ ଘଟଣା ନେଇ ଆରମ୍ଭ ହୋଇ ଗଡ଼ି ଚାଲିଛି । ଉଭୟ ସରକାର ଭିତରେ ଯେଉଁ ଚିଠିପତ୍ର ଦିଆନିଆ ହୋଇଛି ତାକୁ ପଢ଼ିଲେ ଦେଖିବେ ଯେ, ଏସବୁ ନେଇ ଗତାନୁଗତିକ ଢଙ୍ଗରେ ଆଲୋଚନା ଚାଲିଛି । ଉଭୟପକ୍ଷ କହୁଛନ୍ତି—ଆମେ ଆମ ସୈନ୍ୟଙ୍କୁ ସରହଦ ନ ଟପିବାପାଇଁ କଡ଼ା ନିର୍ଦ୍ଦେଶ ଦେଇଛୁ । ଆପଣ ଆପଣା ସୈନ୍ୟଙ୍କୁ ତାକିଦ୍ କରନ୍ତୁ, ଇତ୍ୟାଦି । ମାତ୍ର ତଥାପି ଯେତେବେଳେ ସୀମାଲଙ୍ଘନର ଅଭିଯୋଗ ହେଲା ସେତେବେଳେ କ୍ରମେ ସମସ୍ତଙ୍କ ମୁଣ୍ଡରେ ଖିଆଲ ପଶିଲା ଯେ, ନିଜ ନିଜର ସୀମା ବୋଲି ଉଭୟପକ୍ଷ ଯାହାକୁ ଧରି ନେଇଛନ୍ତି, ସେଥିରେ ଗଲତି ଅଛି । ତେଣୁ ଏବେ ବିବାଦଗ୍ରସ୍ତ ଅଞ୍ଚଳରୁ ଉଭୟେ ସୈନ୍ୟ ହଟେଇ ନେବାପାଇଁ ପ୍ରସ୍ତାବ ଦିଆ ହୋଇଛି । ଏ ଘଟଣାକୁ ଆନୁପୂର୍ବିକ ଅଧ୍ୟୟନ କଲେ

ସ୍ପଷ୍ଟ ଜଣାଯିବ ଯେ, ଏ ବାଦାନୁବାଦକୁ ଦୀର୍ଘକାଳ ଧରି ଚାଲିବାକୁ ଦିଆ ହେଲା, ଏହାହିଁ ଏଥିରେ ଭୁଲ ହେଲା । ଯେଉଁବେଳେ ଯୁଦ୍ଧକୁ ଅକାମୀ—out moded ବୋଲି ଘୋଷଣା କରାହେଲା, କୋରିଆ, ଫରମୋଜା, ମାକାଓ, ଇଣ୍ଡୋଚୀନ ଓ ଆମ ଘର ଭିତରେ ଗୋଆରେ ସୁଦ୍ଧା ଯୁଦ୍ଧଦ୍ୱାରା ସମସ୍ୟାର ସମାଧାନ ହେଇ-ନାହିଁ ଓ ହେବ ନାହିଁ ବୋଲି ଦେଖାଗଲା; ସେତେବେଳେ ଯୁଦ୍ଧର ବଦଳରେ ସମାଧାନର ଅନ୍ୟଯେଉଁ ପନ୍ଥା ଧରିବା କଥା ତାହାକୁ ସେହିପରି ଯୁଦ୍ଧବେଳ ଭଳି ଚଟପଟ ଚାଲୁ କରିବା ଉଚିତ ଥିଲା । ମାତ୍ର ଆମର ଅଭ୍ୟାସ ଯେ ଯୁଦ୍ଧ ହେଲଛଡ଼ା ଅନ୍ୟବେଳେ ସବୁ କାମ ଧୀରେ ସୁସ୍ଥେ ବଳଦଗାଡ଼ି ପଦ୍ଧତିରେ ଚାଲିଥିବ । ଯୁଦ୍ଧ କରାଯିବ ନାହିଁ ବୋଲି କୁହାଯିବା ପରେ ମଧ୍ୟ କାହିଁକି ଭୟ ନାହିଁ, ସରକାରୀ ମହଲରେ ଏ ସୁସ୍ଥି ଭାବ କାହିଁକି ଚାଲିଛି ? ଯୁଦ୍ଧ ବିଭାଗର ଉଚ୍ଚକୋଟିର କର୍ମକୁଶଳତା ଥାଏ, ସମୟ ନଷ୍ଟ କରିବାର ବିପଦ ସେମାନେ ଭଲ ଭାବରେ ବୁଝନ୍ତି । ଏହାହିଁ ସେମାନଙ୍କର ବିଶେଷତା ଓ ଏଇଥିପାଇଁ ନାନାପ୍ରକାର ବେସାମରିକ ସଙ୍କଟରେ ମଧ୍ୟ ସେମାନଙ୍କ ସାହାଯ୍ୟ ଲୋଡ଼ା ହୁଏ । ସେକ୍ରେଟାରିଏଟ୍‌ବାଲଙ୍କ ଭିତରେ ମଧ୍ୟ ସେହିପରି କର୍ମତତ୍ପରତା କାହିଁକି ନଆସିବ ?

ନେହରୁ ନିଜେ କହିଛନ୍ତି ଯେ, ଏ ଘଟଣା ବେଶୀ ଗୁରୁତର ନୁହେଁ । ମାତ୍ର ଏବେ ଅବସ୍ଥା ଅଧିକ ଗୁରୁତର ହେଉଛି, କାରଣ ଯେତେ ବେଳ ଗଡ଼ିଯାଉଛି, ଜନତା ପକ୍ଷରୁ ସେତେ ଚାପ ଉଭୟ ଦେଶରେ ସୃଷ୍ଟି ହେଉଛି । ତେଣୁ ଆଜ ଉଚ୍ଚମହଲର କଥାବାର୍ତ୍ତା ପାଇଁ ପରିସ୍ଥିତି ସୃଷ୍ଟି ହେଇନାହିଁ । ମାତ୍ର ନେହରୁଙ୍କର ଶେଷ ପ୍ରସ୍ତାବ ନିଶ୍ଚୟ ଗ୍ରହଣୀୟ ହେବ ବୋଲି ମୋର ବିଶ୍ୱାସ । ମାତ୍ର

ଏ ବାବଦରେ ବିଶେଷ ସଜାଗ ରହିବାର କଥା ଯେ, ଆଜି ଆମର ବୈଦେଶିକ ନୀତିର ମୂଳନୀତି ଉପରେ ଆକ୍ରମଣ ଚାଲିଛି । ଚୀନ ସମସ୍ୟାର ଆଳରେ କ୍ଷୁଦ୍ର ରାଜନୀତିକ ଫାଇଦା ଉଠାଇବା ଚେଷ୍ଟା ମଧ୍ୟ ଚାଲିଛି । ତେଣେ କେରଳ ନିର୍ବାଚନରେ କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ଏହାର ସୁବିଧା ଉଠେଇବା ଚେଷ୍ଟା ହେଉଛି ତ ଏଣେ ଭାରତ ଜାତୀୟ ଟ୍ରେଡ୍ ୟୁନିୟନରେ କୁହାଯାଇଛି ଯେ ଭାରତରେ କମ୍ୟୁନିଷ୍ଟଙ୍କର ସ୍ଥାନ ନାହିଁ, କାରଣ ତାଙ୍କର ଚେର ଦେଶ ବାହାରେ ରହିଛି । ଏତ ଏକ ଘୋର ଲଜ୍ଜାର କଥା ଯେ, ଏ ଦେଶରେ ଏକ ସୁସ୍ଥ ଓ ସବଳ ଶ୍ରମିକ ଆନ୍ଦୋଳନ ଗଢ଼ି ଉଠି ପାରୁନାହିଁ । ବିଭିନ୍ନ ମତାବଲମ୍ବୀ ଶ୍ରମିକ ସଂଘମାନେ ନିଜ ନିଜର ରାଜନୀତିକ ଝଣ୍ଡା ଧରି କାମରେ ଲାଗିଛନ୍ତି । ସେଥିରେ ପୁଣି କମ୍ୟୁନିଷ୍ଟଙ୍କୁ ଏ ଦେଶରେ ରହିବାକୁ ଦିଆଯିବ ନାହିଁ ବୋଲି କହିବାଦ୍ୱାରା ଗଣତନ୍ତ୍ରର ମୂଳନୀତିରେ ଆଘାତ କରା ହେଉଛି ।

ଅବଶ୍ୟ ତେଣେ ବି ଆଜିଯାଏ କମ୍ୟୁନିଷ୍ଟ ଦଳର ନାବାଳକୀ କଟିନାହିଁ । ସେମାନେ କେତେବେଳେ ଡାହାଣକୁ ତ ପୁଣି କେତେ-ବେଳେ ବାଁକୁ ଦୋହଲିବାରେ ଲାଗିଛନ୍ତି । ଠିକ୍ ବେଳେ ଠିକ୍ କାମଟା ତାଙ୍କଦ୍ୱାରା ଆଜିଯାଏ ହେଲା ନାହିଁ । ତେଣେ ଚୀନ କଥା ଉଠେଇ ତାଙ୍କ ଉପରେ ଆକ୍ରମଣ ହେଲା ତ ସେ ଏଣେ ଷଡ଼େଇ-କଲା ଖରସୁଆଁ କଥା ଉଠେଇ ଲୋକଙ୍କୁ ଓଲଟା ମତେଇ ଦେବା ଚେଷ୍ଟା କରୁଛନ୍ତି । ତେଣେ ଯଦି କୁହାଗଲା ଯେ, ଏମାନଙ୍କର ଏ ଦେଶରେ ଚେର ନାହିଁ ତେବେ ଏଣେ ଏମାନେ ଷଡ଼େଇକଲା ଖରସୁଆଁକୁ ବିହାର ହାତରେ ବିକିଦେଇଥିବା ଜୟଚନ୍ଦ୍ରଙ୍କୁ ଫାସୀ ଦିଆଯିବାର ଦୁଆ ଉଠେଇବାରେ ଲାଗିଛନ୍ତି । ଏ କିପ୍ରକାରର

ରାଜନୀତି ! ଏସବୁ କଣ ଆଜିର ଦୁନିଆରେ ଗୋଟାଏ ଗୋଟାଏ ସମସ୍ୟା ?

ଜେତେଣେ ଆଇଜେନ୍‌ହାୱାର ଓ କ୍ରୁଶ୍ଚେଭ୍ ବିଶ୍ୱଶାନ୍ତି ପାଇଁ ମିଶିଲା ବେଳକୁ ଯେଉଁ ମିଳନ ଆମେ ବିଶ୍ୱର କାମନା କରୁଥିଲୁ କ'ଣ ଏଇସବୁ ଝଗଡ଼ାଇକଲା ଖରସୁଆଁ ଆଦି ସମସ୍ୟା ଆମ ଆଗରେ ବଡ଼ ହୋଇ ଦେଖା ଦେଇଛି ? ଆଜିର ଏ ଦୁନିଆରେ ଯେଉଁଥିରେ ଏସିଆ ଆଫ୍ରିକାର କୋଟି କୋଟି ଲୋକ ନିରନ୍ନ ଓ ବୁଭୁକ୍ଷୁ ହୋଇ ରହିଛନ୍ତି ତା ଭିତରେ ଏ କେଉଁ ସମସ୍ୟାଟା ଗୁରୁତର ? ଭାରତବର୍ଷର ସ୍ୱରାଜ୍ୟ ପରେ ବି ଆମେ କ'ଣ କଲୁ ? ସରକାରଙ୍କର ନିଜର ମୂଲ୍ୟାଙ୍କନ ରିପୋର୍ଟମାନ କହୁଛି ଯେ, ଯୋଜନା-ଦ୍ୱାରା ତେଲିଆ ମୁଣ୍ଡରେ ତେଲ ଢଳା ହେଉଛି । କର୍ମନିଷ୍ଠତାର ଅଭାବ ରହିଛି । ଏ ସବୁ ସୁଧାରିବା, ନା ଯୁଦ୍ଧ ଯୁଦ୍ଧ ବୋଲି ରଡ଼ି ଛାଡ଼ିବା ? ଏପରି ରଡ଼ି ନ ଛାଡ଼ି ବରଂ ଯୁଦ୍ଧପାଇଁ ଯେଉଁ କୋଟିର କୋଟିର କୋଟିଗୁଣ ଟଙ୍କା ପୃଥିବୀରେ ଖରଚ ହେଉଛି, ତାହା ବନ୍ଦକରି କୋଟି କୋଟି ମାନବର ଦୁଃଖ ଦୂର କରିବାରେ ତାହାର ବିନିଯୋଗର ପନ୍ଥା ବିଚାରିବା ବୁଦ୍ଧି । ଯଦି ଦୁନିଆରେ ଭଗବାନ ବା ସତ୍ୟ ବୋଲି କିଛି ଥାଏ, ତେବେ ତାହା ନିକଟରେ ଆମକୁ ଜବାବ ଦେହି ହେବାକୁ ହେବ ଯେ, ବିଜ୍ଞାନର ଯେଉଁ ଅପାର ଶକ୍ତି ଆଜି ମଣିଷ ହାତକୁ ଆସିଛି ତାକୁ ଅମେ କିପରି ବ୍ୟବହାର କଲୁ ? କେତେ ଦୁଃଖ ଦୂର କଲୁ ? ନା ଏତିକିବେଳେ କେବେକାର ପୁରୁଣା ରାଷ୍ଟ୍ରୀୟ ସାର୍ବଭୌମ ଅଧିକାର ପ୍ରାଦେଶିକ ସୀମା ଆଦିକଥା ନେଇ ଆମେ ଯେତେ ବାଜେ ଝଗଡ଼ାରେ ଲାଗିଛୁ ! ଏବେ ଭିତରର ସାର୍ବଭୌମ ରାଷ୍ଟ୍ରୀୟତାର ଦାବୀ କଥାମଧ୍ୟ ଖୁବ୍ ଉଠିଲା ।

ସେଥିରେ ଆମର ସର୍ବୋଦୟର କେତେକ ଅଗ୍ରଣୀ ମଧ୍ୟ ବହୁତ ଆଗୁଆ ହୋଇ ଭାଗ ନେଲେ । ମାତ୍ର ବୁଝିବା ଆବଶ୍ୟକ ଯେ, ଏଣ

ଭାରତ ଭିତରେ ଆମେରିକା ଆଦି ପକ୍ଷରୁ ଯେଉଁସବୁ ଷଡ଼ଯନ୍ତ୍ରମୂଳକ ଉଦ୍ୟମ ଚାଲିଛି ତାର ପ୍ରତିକ୍ରିୟା ମଧ୍ୟ ଏ ସମସ୍ୟା ଭିତରେ ରହିଛି । ଯାହା ହେଉ ଏବେ ଭାରତ ସରକାର ଏହାର ବିପଦ ବୁଝିଲେଣି ଓ ଏ ଷଡ଼ଯନ୍ତ୍ର ମୂଳକ ଉଦ୍ୟମ ବନ୍ଦ କରିବାର ଦୃଢ଼ ବ୍ୟବସ୍ଥା କଲେଣି । ଆମେ ବୁଝିବା ଚାହିଁ ଯେ, କ'ଣ କେବଳ କମ୍ୟୁନିଷ୍ଟମାନଙ୍କ ଦେଶ ଭକ୍ତି ବାହାରେ ଅଛି; ଆଉ କାହାର ନାହିଁ ? ଯେଉଁମାନେ ନାନା ବ୍ୟବସାୟ ସୂତ୍ରରେ ବିଳାତ, ଆମେରିକା ଯାଉଛନ୍ତି, ସେଠା ସହିତ ସମ୍ପର୍କ ରଖୁଛନ୍ତି, ଯେଉଁମାନେ ଆମେରିକାର ପ୍ରଚାର ବିଭାଗ ପାଇଁ ଖଣ୍ଡେ ଖଣ୍ଡେ ବହି ଅନୁବାଦ କରିଦେଇ ତିରିଶ ଚାଳିଶ ହଜାର ଟଙ୍କା ପାଉଛନ୍ତି, ସେମାନଙ୍କ ଦେଶ କ'ଣ ଭାରତ ଭିତରେ ? ଏସବୁ ଆମକୁ ଭାବିବାକୁ ହେବ ଯେ, ଭାରତବର୍ଷ ମହାତ୍ମା ଗାନ୍ଧୀଙ୍କର ଏ ଦେଶ, ଯେଉଁଠି ପାହାଡ଼ପରି ଅଟଳ ନେହରୁ ରହିଛନ୍ତି; ସେଠି ଏ କି ଖେଳ ଚାଲିଛି । ଏସବୁ ଏଇଥିପାଇଁ ଯେ ଦେଶରେ ଦୃଢ଼ତାର ଅଭାବ, ମୌଳିକ ସିଦ୍ଧାନ୍ତକୁ ଦୃଢ଼କରି ଧରିବାର ଅଭାବ ଘଟିଛି । ମୌଳିକ ସିଦ୍ଧାନ୍ତ କହିଲେ ମୁଁ କୌଣସି ଫମ୍ପା ଧୂଆଁବାଣ, ତ୍ୟାଗ ଆଦି କଥା କହୁନାହିଁ । ମୁଁ ଜନତାର ଦୁଃଖ ଦୂର କରିବା କଥା, ସେମାନଙ୍କର ଭୋଗର କଥା କହୁଛି । ବିଜ୍ଞାନ ଯୋଗୁଁ ଆଜି ଏହାର ଦିନ ଆସିଛି । ମାତ୍ର ଠିକ୍ ଏତିକିବେଳେ ଆମେ ଯେଉଁ ମୌଳିକ ନୀତି ଆଜଯାଏ ଧରି ଆସିଛୁ, ତାହାକୁ ଦୃଢ଼ତାର ସହିତ ଧରି ରଖିବାର ସାହସ ଆମର ଅଣ୍ଟୁନାହିଁ । ବାହାରର ନାନାପ୍ରକାରର ଚାପରେ ଆମର ନେତା ମଧ୍ୟ ଟଳମଳ ହେଇ ଯାଉଛନ୍ତି । ଏତେବେଳେ ତାଙ୍କର ହାତକୁ ଦୃଢ଼ କରିବା ଓ ଜନତାକୁ ସଜାଗ ରଖିବା ଆମର କର୍ତ୍ତବ୍ୟ ।

---

# ସର୍ବୋଦୟ ଓ ଭୂଦାନ ସାହିତ୍ୟ

| | | |
|---|---|---|
| ୧। ଗୀତା | ଆଚାର୍ଯ୍ୟ ହରିହର ଦାଶ | ଟ୧୳୵ |
| ୨। ଗୀତା ପ୍ରବଚନ | ବିନୋବା | ଟ୧୲ |
| ୩। ଶିକ୍ଷାତତ୍ତ୍ୱ | ,, | ଟ୨୲ |
| ୪। ବିନୋବା ବିଚାର | ,, | ଟ୧୳ |
| ୫। ସର୍ବୋଦୟ ଓ ସାମ୍ୟବାଦ | ,, | ଟ୦୳୵ |
| ୬। ଆତ୍ମ ତୃଷ୍ଣାୟ ଶକ୍ତି | ,, | ଟ୦। |
| ୭। ଗାନ୍ଧୀଜୀଙ୍କୁ ଶ୍ରଦ୍ଧାଞ୍ଜଳି | ,, | ଟ୦୳ |
| ୮। ବିଜ୍ଞାନ ଓ ଅହିଂସା | ,, | ଟ୦୴ |
| ୯। ବ୍ରହ୍ମବିଦ୍ୟାର ସାଧନା | ,, | ଟ୦/୬ |
| ୧୦। ସଂକ୍ଷିପ୍ତ ଆତ୍ମକଥା | ଗାନ୍ଧୀଜୀ | ଟ୨୳ |
| ୧୧। ସର୍ବୋଦୟ | ,, | ଟ୦। |
| ୧୨। ମହାପୁରୁଷ | ମନମୋହନ ଚୌଧୁରୀ | ଟ୦୳ |
| ୧୩। ସ୍ୱାସ୍ଥ୍ୟଯାତ୍ରା | ,, | ଟ୧୳ |
| ୧୪। ଲୁଣୀମୁଲିଆ ଗାନ୍ଧୀ | ୰ ଗୋପବନ୍ଧୁ ଚୌଧୁରୀ | ଟ୧୲ |

## ପ୍ରାପ୍ତି ସ୍ଥାନ

**ସର୍ବୋଦୟ ଭଣ୍ଡାର**

ବାଙ୍କାବଜାର, କଟକ—୨

## ସର୍ବୋଦୟ ଓ ଭୂଦାନ ସାହିତ୍ୟ

| | | |
|---|---|---|
| ୧। ଗୀତା | ଆଚାର୍ଯ୍ୟ ହରିହର ଦାଶ | ଟ୧୬୵ |
| ୨। ଗୀତା ପ୍ରବଚନ | ବିନୋବା | ଟ୧୮ |
| ୩। ଶିକ୍ଷାତତ୍ତ୍ୱ | ” | ଟ୨୮ |
| ୪। ବିନୋବା ବାଣୀ | ” | ଟ୧୫ |
| ୫। ସର୍ବୋଦୟ ଓ ସାମ୍ୟବାଦ | ” | ଟ୦୫୵ |
| ୬। ଆତ୍ମ ତୃଷ୍ଣାୟ ଶକ୍ତି | ” | ଟ୦।୵ |
| ୭। ଗାନ୍ଧୀଜୀଙ୍କୁ ଶ୍ରଦ୍ଧାଞ୍ଜଳି | ” | ଟ୦୫ |
| ୮। ବିଜ୍ଞାନ ଓ ଅହିଂସା | ” | ଟ୦୶ |
| ୯। ବ୍ରହ୍ମବିଦ୍ୟାର ସାଧନା | ” | ଟ୦/୬ |
| ୧୦। ସଂକ୍ଷିପ୍ତ ଆତ୍ମକଥା | ଗାନ୍ଧୀଜୀ | ଟ୨୫ |
| ୧୧। ସର୍ବୋଦୟ | ” | ଟ୦। |
| ୧୨। ମହାପୁରୁଷ | ମନମୋହନ ଚୌଧୁରୀ | ଟ୦୫ |
| ୧୩। କ୍ରାନ୍ତିଯାତ୍ରା | ” | ଟ୧୫ |
| ୧୪। ଗ୍ରାମୀଣ ମୁକ୍ତି ଆ ଗାନ୍ଧୀ | ୰ ଗୋପବନ୍ଧୁ ଚୌଧୁରୀ | ଟ୧୮ |

### ପ୍ରାପ୍ତି ସ୍ଥାନ

**ସର୍ବୋଦୟ ଭଣ୍ଡାର**

ବାଙ୍କାବଜାର, କଟକ—୨